# ଜଣେ ଯାତ୍ରୀ

ଅନାଦି ନାୟକ



# ଜଣେ ଯାତ୍ରୀ

**ଅନାଦି ନାୟକ**

ପ୍ରକାଶକ : ଲେଖନୀ, ଦାସ ସାହି, କଟକ - ୧୨
ଅକ୍ଷର ସଜ୍ଜା ଓ ମୁଦ୍ରଣ : ଆକୃତି ଗ୍ରାଫିକ୍ସ, ଦାସ ସାହି, କଟକ - ୧୨
ମୂଲ୍ୟ - ଟ. ୩୦/-(ତିରିଶି) ମାତ୍ର
**ସଂଶୋଧିତ ଓ ପରିବର୍ଦ୍ଧିତ ସଂସ୍କରଣ - ୨୦୦୩**

# JANE JATRI

Anadi Nayak

Publisher : **LEKHANI**, Dasa Sahi, Cuttack - 12
Designed & Printed at : **Akruti Graphics**
Dasa Sahi, Cuttack - 12
Price: Rs. 30/ (Thirty Only)
**Edited and Enlarged Second Edition — 2003**

# ମୁଖବନ୍ଧ

'ଜଣେ ଯାତ୍ରୀ' ବହିର ମୁଖବନ୍ଧ ଲେଖିଦେବା ପାଇଁ ଅନାଦି ମତେ ଅନୁରୋଧ କରିଛନ୍ତି । ଯେଉଁ କାମ ପାଇଁକି ମୁଁ ସମ୍ପୂର୍ଣ୍ଣ ଅପାରଗ । କେବଳ ଅନାଦିଙ୍କ ଅନୁରୋଧ ଭାଙ୍ଗିପାରିବି ନାହିଁ ବୋଲି ପଦେ ଲେଖିଦେଉଛି ।

''ମନୁଷ୍ୟତ୍ୱଂ, ମୁମୁକ୍ଷୁତ୍ୱଂ,
ମହାପୁରୁଷ-ସଂଶ୍ରୟ''

ଏ ତିନୋଟି ଜୀବନର ସବୁଠାରୁ ବଡ଼ କାମ୍ୟ ବୋଲି ମହାଜନ କହିଛନ୍ତି । ମୋର ଆଶା ଏ ବହି ଖଣ୍ଡିକ ଆମମାନଙ୍କୁ ମହାପୁରୁଷ-ସଂଶ୍ରୟର ଫଳ ଦେବ ।

ଥୋରିଆ ସାହି, କଟକ
୩ । ୮ । ୬୩ **ରମା ଦେବୀ**

# କୈଫିୟତ୍

କେତେଥର ଆଚାର୍ଯ୍ୟ ମହାଶୟଙ୍କ ଆଗରେ କାଗଜକଲମ୍ ଧରି ମୁଁ ଅଝଟ କରିଛି, 'ଆପଣ ନିଜ ଜୀବନର ଘଟଣା ସବୁ ଡାକି ଯାଆନ୍ତୁ' ବୋଲି । କିନ୍ତୁ ସେ ସେସବୁ କିଛି ଶୁଣନ୍ତି ନାହିଁ । ମୁଁ ଜାଣେ ଯେ—ଆଚାର୍ଯ୍ୟ ମହାଶୟଙ୍କୁ ଓଡ଼ିଶାର ଘରେ ଘରେ ପିଲାଠାରୁ ବୁଢ଼ାଯାଏ ସମସ୍ତେ ଭଲ ପାଆନ୍ତି । ପିଲାମାନେ ଏହି ପଦଯାତ୍ରୀଙ୍କର ଦାଢ଼ି ଟାଣି ଖେଳନ୍ତି । ବଡ଼ମାନେ ନଇଁ ପଡ଼ନ୍ତି ତାଙ୍କର ପାଦ ଉପରକୁ ଆଶୀର୍ବାଦ ଭିକ୍ଷାରେ । ଏହିପରି ଭାବେ ସମସ୍ତେ ତାଙ୍କର ପ୍ରିୟ । ସମସ୍ତେ ତାଙ୍କରି କୁଟୁମ୍ବ ।

ଏହି ଯୁଗାଚାର୍ଯ୍ୟ ଯାତ୍ରୀଙ୍କର ଜୀବନୀ ଭାରତବର୍ଷର ଅହିଂସକ ବିପ୍ଳବର ଏକ ବିରାଟ ଅଧ୍ୟାୟ, ଉତ୍କଳର ଜାତୀୟ ଜୀବନର କ୍ରମବିକାଶର ଗୋଟାଏ ଶତାବ୍ଦୀରୁ ତିନିଚତୁର୍ଥାଂଶ । ସୁତରାଂ, ଏହି ମହାନ୍ ବ୍ୟକ୍ତିଙ୍କର ଜୀବନରୁ ପ୍ରତ୍ୟେକଟି ଘଟଣା ପ୍ରତ୍ୟେକ ମଣିଷ ଉପରେ ପ୍ରଭାବ ପକାଇଲା ଭଳି । ସେସବୁକୁ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରି ଜୀବନୀ-ଗ୍ରନ୍ଥ ପ୍ରକାଶ କରିବା ଏକ ଆୟାସ ସାଧ୍ୟ ବ୍ୟାପାର । ସେପରି ଗୁରୁତର ପ୍ରଚେଷ୍ଟା ମୁଁ କରିନାହିଁ ।

୧୯୫୮ ମସିହାର ଅଗଷ୍ଟ ପନ୍ଦରରେ ପଦଯାତ୍ରା କରିବାର ସେ ଯେଉଁ ସଂକଳ୍ପ କଲେ, ତା'ର ବହୁ ପୂର୍ବରୁ ସେ 'ଜଣେ ଯାତ୍ରୀ' । ପଦଯାତ୍ରାରେ ତାଙ୍କ ସଙ୍ଗେ ବୁଲୁଥିବାବେଳେ ମୁଁ ତାଙ୍କୁ 'ଜଣେ ଯାତ୍ରୀ' ଦୃଷ୍ଟିରେ ହିଁ ଦେଖିଆସିଛି ।

'ଉଦୟ ଭାନୁ'ର କୋମଳମତି ସ୍କୁଲ ପିଲାଙ୍କ ପାଇଁ ଏହି 'ଜଣେ ଯାତ୍ରୀ'ଙ୍କର ଜୀବନୀରୁ କେତୋଟି ସରସ ଅଧ୍ୟାୟ ଯୋଗାଇ ଦେଇ ଚୁପ୍ ରହିବାହିଁ ମୋର ଉଦ୍ଦେଶ୍ୟ ଥିଲା । ମାତ୍ର ପ୍ରଥମ ଲେଖାଟି ପ୍ରକାଶ ପାଇ ସାରିଲା ପରେ ସଂପାଦକ ମହାଶୟ କହିଲେ—ଆଚାର୍ଯ୍ୟ ମହାଶୟଙ୍କ ସମ୍ବନ୍ଧରେ କେତୋଟି ନୁହେଁ—କେତେଗୁଡ଼ିଏ ତଥ୍ୟକୁ କେନ୍ଦ୍ରକରି ଏକ ଅବ୍ୟାହତ ଲେଖାଙ୍କ (ସିରିଜ୍ ଅଫ୍ ଆର୍ଟିକ୍ଲସ୍) ପ୍ରକାଶ କରିବା ପାଇଁ ।

ଫଳରେ ବର୍ଷେ ତିନିମାସ ପର୍ଯ୍ୟନ୍ତ ଚାଲିଥିବା ଏ ସିରିଜ୍‌ର ଲେଖାଗୁଡ଼ିକ ବିଭିନ୍ନ ସମୟରେ ଲେଖାଯାଇଛି । ଏଣୁ ବିଭିନ୍ନ ସମୟର ମାନସିକ ସ୍ଥିତି ଏଥିରେ ପ୍ରତିଫଳିତ ହେବା ମୋ ପରି ଅନଭ୍ୟସ୍ତ ଲେଖକ ପକ୍ଷେ ହୁଏତ ଏକ ସ୍ୱାଭାବିକ କଥା । ଦିଅଁ ଗଢ଼ିବାକୁ ଯାଇ ବାସ୍ତବରେ କ'ଣ କରିଛି, ତାହା କହିପାରିବା ମୋ ପକ୍ଷେ କାଠିକର ପାଠ ।

'ଉଦୟ ଭାନୁ'ରେ ପ୍ରକାଶ ପାଇଥିବା ଲେଖାଗୁଡ଼ିକୁ ଥରେ ଶୁଣିବାପାଇଁ ଅନେକ ଥର ଆଚାର୍ଯ୍ୟ ମହାଶୟଙ୍କ ପାଖରେ ଅଝଟ କଲି । ସେ ଫାଙ୍କି ଦେଲେ । ଏଣୁ ଥରେ ପୁରୀର ଗୋପବନ୍ଧୁ ଭବନକୁ ଯିବାକୁ ହେଲା । ମୁଁ ଜାଣେ ଯେ, କେହି ଭୁଲ କଥାଟାଏ କହୁଥିଲେ, ଆଚାର୍ଯ୍ୟ ମହାଶୟ

ତୁରନ୍ତ ତାକୁ ଠିକ୍ କଥାଟା ବତେଇ ଦିଅନ୍ତି । ଏଣୁ ଯାହା ତାଙ୍କଠାରୁ ବା ବିଭିନ୍ନ ସୂତ୍ରରୁ ସଂଗ୍ରହ କରି ଲେଖିଥିଲି, ସେ ସବୁକୁ ତାଙ୍କ ପାଖରୁ ଦୁଇହାତ ଛଡ଼ାରେ ପାଟିକରି ପଢ଼ିବାକୁ ଲାଗିଲି । ଏଥର ସେ ଯାଆନ୍ତେ କୁଆଡ଼େ ? ବାଧ ହୋଇ ଶୁଣିଲେ । ସ୍ଥାନେ ସ୍ଥାନେ ସଂଶୋଧନ କରିବାକୁ କହିଲେ । ଅଧାରୁ କିଛି ଅଧିକ ଶୁଣିବା ପରେ ଠେଙ୍ଗାଟି ଧରି ସଚିବାବୁଙ୍କୁ ଡାକିଲେ । ମୁଁ ବୁଝିଲି ଯେ, ଏଥର ଉଠିବା ଯୋଗ ।

ପରଦିନ ଦିନ ଦଶଟାବେଳେ ଆଚାର୍ଯ୍ୟ ମହାଶୟ ଓ ମୁଁ ଉଭୟେ ଜଣଙ୍କ ଘରକୁ ଯାଉଥାଉଁ । ମୁଁ ଫେରେ ସେଇକଥା ଉଠେଇଲି । ଏଥର ସେ ନିଜର ରୋକ୍‌ଠୋକ୍ ମତଦେଇଦେଲେ ।

**''ବଞ୍ଚି ଥାଉଁ ଥାଉଁ କୌଣସି ଲୋକର ଜୀବନୀ ଲେଖାଯିବା ଉଚିତ୍ ନୁହେଁ । ଅନେକ 'ମୋ ଜୀବନୀଟା ଲେଖିଦିଅ' ବୋଲି କହନ୍ତି । କିନ୍ତୁ ମୋର ସେ ପ୍ରକୃତି ନୁହେଁ ।''**

ସେଦିନ ଜୁଲାଇ ୧୭ ତାରିଖ ୧୯୬୨ ମସିହା ।

ଦେଢ଼ବର୍ଷ ସମୟ ମଧରେ ବହୁ ଶୁଭାଧାୟୀ ଗୁରୁଜନ, ବନ୍ଧୁ ଏବଂ କନିଷ୍ଠଙ୍କର ଆଗ୍ରହ ମୋ ନିକଟରେ ପ୍ରକାଶ ପାଇଚି 'ଜଣେ ଯାତ୍ରୀ'କୁ ପୁସ୍ତକ ଆକାରରେ ଦେଖିବା ପାଇଁ । ଏଣୁ ପ୍ରକାଶକ ମହାଶୟ ଏପରି ଏକ କାର୍ଯ୍ୟ କରିଦେଇଥିବାରୁ ଶ୍ରଦ୍ଧାର ପାତ୍ର ହୋଇଛନ୍ତି ।

ଶ୍ରୀଯୁକ୍ତ ଶଶିଭୁଷଣ ମିଶ୍ର ଛାପାଖାନାକୁ ଯିବା ପୂର୍ବରୁ ପାଣ୍ଡୁଲିପିଟି ଦେଖି ଏ ସଂପର୍କରେ କେତେକ ଗଠନମୂଳକ ପରାମର୍ଶ ଦେଇଥିବାରୁ, ବାସ୍ତବିକ୍ ମୋତେ ଉପକୃତ କରିଛନ୍ତି ।

ଓଡ଼ିଶା ସରକାରଙ୍କ ଲୋକସଂପର୍କ ବିଭାଗ, ଢେଙ୍କାନାଳର ନିଉ ଫଟୋଡିଲକ୍ସ ଓ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟର ଗୁରୁଜୀ ଶ୍ରୀ ଜୟନାରାୟଣ ଦାସ କେତେକ ଫଟୋ ଯୋଗାଇ ଦେଇଥିବାରୁ ସେମାନଙ୍କୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଚି ।

ଭୂଦାନ ଅଫିସ, କଟକ
ତା ୨୦/୭/୬୩ ରିଖ

[signature]

# ଦ୍ୱିତୀୟ ସଂସ୍କରଣର ମୁଖବନ୍ଧ

'ଜଣେ ଯାତ୍ରୀ' ବହିଟି ପ୍ରଥମେ ଯେତେବେଳେ ପ୍ରକାଶ ପାଇଲା ସେତେବେଳକୁ ମୋର ଭଲ କରି ଦାଢ଼ି ଉଠି ନ ଥାଏ । ଏବେତ ଦାଢ଼ି ପାଚିଗଲାଣି ।

ଆଚାର୍ଯ୍ୟ ମହାଶୟଙ୍କ ସାନ୍ନିଧ ଆହୁରି ବହୁ ଲୋକଙ୍କ ପରି ମୋତେ ମଧ ଖୁବ୍ ପ୍ରଭାବିତ କରିଛି । ସ୍ନେହ, ତ୍ୟାଗ ଏବଂ ସେବାର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ଏବେ ବି ତାଙ୍କ କଥା ମନେ ପଡ଼ିଲେ, ମନଟା ପୂରି ଉଠେ । ଆପେ ଆପେ କହି ହୋଇଯାଏ ''ଆଚାର୍ଯ୍ୟ ମହାଶୟ ଥାଆନ୍ତେ କି !''

ଆଚାର୍ଯ୍ୟ ହରିହର ଦାସ ଥିଲେ ସ୍ୱାଧୀନଚେତା, ସ୍ୱାଧୀନତା ସଂଗ୍ରାମୀ ଓ ବକୁଳ ବନର ପଞ୍ଚସଖା ଭିତରୁ ଜଣେ । ତାଙ୍କର ଆତ୍ମାହୂତି ଓ ତିତିକ୍ଷା ସମସ୍ତଙ୍କ ଲାଗି ଅନୁକରଣୀୟ ହୋଇ ରହିଛି ଓ ରହିବ ।

ବର୍ତ୍ତମାନ ପିଢ଼ିର ଯୁବକ ଯୁବତୀଙ୍କ ଆଗରେ ଆଚାର୍ଯ୍ୟ ମହାଶୟଙ୍କ ବ୍ୟକ୍ତିତ୍ୱକୁ ଅବସ୍ଥାପିତ କରିବା ପାଇଁ ଦ୍ୱିତୀୟ ସଂସ୍କରଣ ମାଧମରେ ମୁଁ ଚେଷ୍ଟା କରିଛି । ସେମାନେ ଆଚାର୍ଯ୍ୟ ହରିହର ଦାସଙ୍କ ବିଷୟରେ ଏଥିରୁ ସୂଚନା ପାଇ ତାଙ୍କ ବିଷୟରେ ଆହୁରି ଖୋଳି ତାଡି ଜାଣିବାକୁ ଇଚ୍ଛା କରିବେ ବୋଲି ମୁଁ ଆଶା କରୁଛି । ଖାଲି ଆଚାର୍ଯ୍ୟ ମହାଶୟ ନୁହନ୍ତି ଓଡ଼ିଶାର ଜନ ମାନସକୁ ତିଆରି କରିବା ପାଇଁ ତାଙ୍କ ପରି ଯେଉଁମାନେ ଆତ୍ମାହୂତି ଦେଇଛନ୍ତି ସେଭଳି ବହୁଲୋକଙ୍କ ବିଷୟରେ ତଥ୍ୟ ସଂଗ୍ରହ କରି ଦୁନିଆ ଆଗକୁ ଆଣିବାର ଦାୟିତ୍ୱ ରହିଛି ବର୍ତ୍ତମାନ ପିଢ଼ିର । କଲେଜ, ବିଶ୍ୱବିଦ୍ୟାଳୟ, ସରକାରୀ, ବେସରକାରୀ ସଂସ୍ଥା ସମସ୍ତେ ଏଥିପାଇଁ ଉଣା ଅଧିକେ ଦାୟିତ୍ୱ ବହନ କରିବା ଉଚିତ୍ ।

ତାହା ଘଟାଇବା ଦିଗରେ ଏ ବହିଟି ଯଦି କିଂଚିତ୍ ସାହାଯ୍ୟ କରେ ତେବେ ନିଜକୁ ଉପକୃତ ମନେ କରିବି । ପୂଜ୍ୟା ଅନ୍ନପୂର୍ଣ୍ଣା ମହାରଣାଙ୍କ ଠାରୁ ତାଗିଦ୍ ଆସି ନ ଥିଲେ, ଜାଣେନା - ଏ କାର୍ଯ୍ୟଟି କେବେ ପୂରା ହୋଇ ଆଆନ୍ତା !

ଏପ୍ରିଲ୍ ୨୪, ୨୦୦୩

ଆଜି ନୂଆ ନୁହେଁ । ଯୁବକ ହରିହର ନିଜର ଟୋକା ବୟସରୁ ଏ ଦେଶର ଦୁଃଖ ଦାରିଦ୍ର୍ୟକୁ ତଡ଼ିବା ପାଇଁ ଯାତ୍ରା ଆରମ୍ଭ କରିଛନ୍ତି ।

୧୮୭୯ ମସିହା ଫାଲ୍ଗୁନ ଶୁକ୍ଳ ଚତୁର୍ଦ୍ଦଶୀର ଏକ ଶୁଭକ୍ଷଣରେ ହରିହର ସାକ୍ଷୀଗୋପାଳର ଶ୍ରୀରାମଚନ୍ଦ୍ରପୁର ଗାଆଁରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ମାତାଙ୍କ ନାମ ଶ୍ରଦ୍ଧାଦେବୀ । ହରିହରଙ୍କର ପିତା ମହାଦେବ ବ୍ରହ୍ମା ଜଣେ ବିଦ୍ୱାନ୍ ବ୍ରାହ୍ମଣ ଥିଲେ । ପିଲାଦିନୁ ମା' ଛେଉଣ୍ଡ ହରିହରଙ୍କର ଲାଳନ-ପାଳନର ଭାର ବିମାତା ଓ ବୃଦ୍ଧା ପିତାମହୀଙ୍କ ଉପରେ ପଡ଼ିଥିଲା । ଏଣୁ ଏବେ ବି ନିଜ ମା'ଙ୍କ ସମ୍ବନ୍ଧରେ କେହି ତାଙ୍କୁ ପ୍ରଶ୍ନ କଲେ, ତାଙ୍କ ଆଖିରେ ଲୁହ ଜକେଇ ଆସେ । ମହାଦେବ ବ୍ରହ୍ମା ପୁଣି ଥରେ ବିବାହ କରିଥିଲେ । ସାବତ ମା' ହୀରାଦେବୀ ହରିହରଙ୍କୁ ପୁଅଠାରୁ ଅଧିକ ସ୍ନେହ କରୁଥିଲେ । ନିଜ ପିଲାଦିନକୁ ମନେ ପକେଇ ହରିହର ଅତି ପରିଣତ ବୟସରେ ଅନେକ ଥର କାନ୍ଦିବା ଶୁଣାଯାଇଛି – ''ଯଦି ସାବତ ମା'ର ସ୍ନେହ ଏତେ ମଧୁର, ତେବେ ମା'ର ସ୍ନେହ କେତେ ମଧୁର ହୋଇ ନ ଥିବ – ମୁଁ ଖାଲି ଏ କଥାଟା ମନେ ମନେ ଅନୁମାନ କରେ ।''

ଏଥିପାଇଁ ପିଲାଦିନରୁ ଶଙ୍କରାଚାର୍ଯ୍ୟଙ୍କ ''କୁପୁତ୍ରୋଜାୟତେ କୁମାତା ନ ଭବତି'' କଥାଟା ତାଙ୍କ ମନକୁ ଖୁବ୍ ନିବିଡ଼ ଭାବରେ ଛୁଇଁଥିଲା ।

ଗାଁ ଚାହାଳିରୁ ପାଠ ଶେଷ କଲାରୁ ହରିହରଙ୍କୁ ଗାଁର ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିବାକୁ ହୋଇଥିଲା । ଯେଉଁ ସ୍କୁଲଗୁଡ଼ିକରେ ଇଂରେଜୀ ପଢ଼ାର ବ୍ୟବସ୍ଥା କିଛି ନ ଥିଲା, ସେ ସ୍କୁଲକୁ ଭର୍ଣ୍ଣାକୁଲାର ସ୍କୁଲ ବୋଲି କୁହାଯାଉଥିଲା । ସେଠାର ପିଲାମାନେ କେବଳ ଓଡ଼ିଆରେ ହିଁ ପାଠ ପଢୁଥିଲେ । ସରକାରୀ ବୃତ୍ତିପାଇ ସେ ପୁରୀ ଜିଲ୍ଲା ସ୍କୁଲରେ ଏଣ୍ଟ୍ରାନ୍ସ୍ ପଢ଼ିଥିଲେ । ହାଇସ୍କୁଲ ପରୀକ୍ଷାକୁ ଏଣ୍ଟ୍ରାନ୍ସ ପରୀକ୍ଷା ବା ପ୍ରବେଶିକା ପରୀକ୍ଷା କୁହାଯାଉଥିଲା । କାରଣ ହାଇସ୍କୁଲରୁ ପାସ୍ କଲେ ଯାଇ, କଲେଜରେ ପ୍ରବେଶ କରିବା ସମ୍ଭବ । ସେ ଖୁବ୍ ଭଲ ପଢୁଥିଲେ । କିନ୍ତୁ କମ୍ ଦୁଷ୍ଟ ନ ଥିଲେ । ଇସ୍କୁଲ ଛୁଟି ହେଲେ ସମୁଦ୍ରରେ ପହଁରିବା, ପୁରୀରୁ ଘରକୁ ଫେରିବା ବାଟରେ ଖରାଦିନେ ପରଗଛରୁ ଆମ୍ବ, ଲଙ୍କା ଆମ୍ବ, ବେଟକୋଳି ଖାଇବା, ଜହ୍ନରାତିରେ ରାମଚଣ୍ଡୀଙ୍କଠାକୁ ଯିବା ଓ ସପ୍ତାହରେ ଥରେ ଦୁଇ ଥର ଭୋଜୀ କରିବା ପ୍ରଭୃତି ତାଙ୍କର ରୀତିମତ ଅଭ୍ୟାସ ଥିଲା । ହରିହରଙ୍କୁ ଛ'ବର୍ଷ ହେବାବେଳକୁ ମା' ଶ୍ରଦ୍ଧାଦେବୀଙ୍କର ମୃତ୍ୟୁ ଘଟିଥିଲା । ମା' ଛେଉଣ୍ଡ ପୁଅ । ଘରର କେହି ପଦେ ଅଧେ କେବେ କେମିତି କହିଦେଲେ, ସଙ୍ଗେ ସଙ୍ଗେ ପିଲା ହରିହର ନାକରେ କାନ୍ଦୁଥିବାରୁ ତାଙ୍କୁ ବିଶେଷ କେହି କିଛି କହନ୍ତି ନାହିଁ । ଏବେ ବି ପିଲା ଦିନର ବହୁ ସାଙ୍ଗଙ୍କର ନାମ ତାଲିକା ତାଙ୍କ ମନରେ ଅଛି ।

ଏତେ ପ୍ରକାର ଦୁଷ୍ଟାମି ଭିତରେ ଗାଁଆରେ ରୋଗ ହେଲେ, ମେଳା ମଉଛବ କିମ୍ବା କାମ ଦାମରେ ସେ ଆଗତୁରା କେତେ ଜଣ ସାଥୀଙ୍କୁ ଘେନି ବାହାରି ପଡ଼ନ୍ତି । ଏଣ୍ଟ୍ରାନ୍ସ୍ ପଢ଼ିବାବେଳେ

ଗାଆଁରେ ଏକ ସମ୍ମିଳନୀର ଆୟୋଜନ ସେମାନେ କରିଥିଲେ । ଏହି ଗ୍ରାମ ସମ୍ମିଳନୀକୁ ପୁରୀ ଏବଂ ଆଖପାଖ ଗାଁର ବିଦ୍ୱାନ ତଥା ବିଶିଷ୍ଟ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ଆସିଥିଲେ । ଗ୍ରାମ ଲୋକେ ଏଥିପାଇଁ କିପରି ନାଚାର ହୋଇ ସହଯୋଗ କରିଥିଲେ, ଏବେ ବି ତାଙ୍କଠାରୁ ସେ କଥା ଶୁଣିଲେ ଭାରି ମଜା ଲାଗେ ।

ହଁ, ଗାଁରେ ତାଙ୍କର ଆଉ କେତେ ଖେଳସାଥୀ ଏବଂ ପଢ଼ାସାଥୀ ଥାଆନ୍ତି । ଆଜିର ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କଠାରୁ ପାଞ୍ଚ ବର୍ଷ ସାନ । ଏକା ଶାସନ ଭିତରେ ଘର । ହିସାବରେ, ସେ ହରିହରଙ୍କର ଦଦେଇ ପୁଅ ଭାଇ ହୁଅନ୍ତି । ଗାଁଆର ନାନା ପ୍ରକାରର ସେବା କାର୍ଯ୍ୟରେ ଉଭୟେ ଖୁବ୍ ଆଗ୍ରହରେ ଲାଗି ପଡ଼ନ୍ତି । ଫଳରେ ଗାଁର ପରସ୍ପର ବିରୋଧୀ ସବୁ ଲୋକଙ୍କର ତାଙ୍କ ପ୍ରତି ଶୁଭେଚ୍ଛା ଥାଏ ।

ଆଜିକାଲି ଦଶ ଜଣ ପିଲାଙ୍କୁ ଠିଆ କରାଇଲେ ପ୍ରାୟ ସାତ ଆଠ ପ୍ରକାରର ବେଶ ପୋଷାକ ଓ ମାଙ୍ଗୁ ଭଙ୍ଗା ଦେଖିବାକୁ ମିଳିବ । ମାତ୍ର ସେତେବେଳେ ବର୍ତ୍ତମାନ ଭଳି, ଭଳିକି ଭଳି ପ୍ୟାଣ୍ଟ, କୁରୁତାର ବହୁଳ ପ୍ରଚଳନ ହୋଇ ନ ଥିଲା । ମୁଣ୍ଡରେ ଦେଢ଼ହାତ ଲମ୍ବର ବାଳ । ତନ୍ତବୁଣା ସାତହାତୀ ଧୋତୀ ଆଉ ଚାଦର ହରିହରଙ୍କର ପିଲା ଦିନିଆ ପୋଷାକ । ଏବେ ବି ତାଙ୍କର ସେହି ପୋଷାକ ରହିଛି । ଛଅ ହାତ ଲମ୍ବର ଆଣ୍ଠୁ ଉପର ଲୁଗାପିନ୍ଧା ଆଉ ଦେହରେ ଖଣ୍ଡିଏ ଚାଦର ଦେଖି ମନେ ହୁଏ ସତେ ଯେପରି ସେ ପିଲା ପାଲଟି ଯାଇଛନ୍ତି । ପରେ ବଡ଼ ବେଳକୁ ଗାଁଆରେ ଯେତେବେଳେ ସେ ନାନା ପ୍ରକାରର ସଂସ୍କାରମୂଳକ କାର୍ଯ୍ୟ ଆରମ୍ଭ କଲେ, ପିଲା ଦିନର ଲୋକସେବା ତାଙ୍କୁ ବହୁତ ସାହାଯ୍ୟ କଲା । ଗାଆଁ ଲୋକେ ଟିକିଏ ବିରକ୍ତ ହେଲେ ସିନା, ବିପଦ ବେଳେ ଉପକାର ପାଇଥିବାରୁ ଭରସି କରି ବିରୋଧ କଲେ ନାହିଁ ।

## (୨)

ସ୍କୁଲକୁ ଯିବାବେଳ ହୋଇ ଗଲାଣି । ପିଲାଟି ବାଡ଼ି ପୋଖରୀକୁ ଗାଧୋଇ ଗଲା । ପୋଖରୀକୁ ଯିବା ବାଟକୁ ଲାଗି ଦୁଇ ପଟେ ନଡ଼ିଆ ବଗିଚା । ନଡ଼ିଆ ଟିଏ ମଝି ବାଟରେ ଝଡ଼ି ପଡ଼ିଥାଏ । ଗାଧୋଇ ସାରି ଫେରିବା ବେଳେ ପିଲାଟି ବାଟରେ ଗୋଟାଏ ନଡ଼ିଆ ପଡ଼ିଥିବା ଦେଖି ଘରକୁ ନେଇ ଆସିଲା । ବୁଢ଼ିମା' ପଚାରିଲେ, ''ନଡ଼ିଆଟି କେଉଁଠୁ ଆଣିଲୁ ?'' ପିଲାଟି ଜବାବ ଦେଲା – ''ମଝି ବାଟରେ ପଡ଼ିଥିଲା ।''

– ''ଆମ ଗଛ ତ ଏବେ ଝଡ଼ା ହୋଇଛି । ଏଣୁ ଫଳଟି ଆମର ନୁହେଁ । ପଡ଼ିଶା ଘରର ହୋଇଥିବ । ଯା' ଫେରାଇ ଦେଇ ଆ'' । ବୁଢ଼ିମା ଆଦେଶ ଦେଲେ ।

ବଡ଼ ଲାଜ ଲାଗିଲା । ନଡ଼ିଆଟା ଘରକୁ ଆଣି ପୁଣି ଫେରାଇ ଦେବାକୁ ହେବ ! ପଡ଼ିଶା ଘର କ'ଣ କହିବେ ? କିନ୍ତୁ ମା' ଯେ ଏଣେ ନଛୋଡ ବନ୍ଧା । ଏଣୁ ବାଧହୋଇ ପିଲାଟି ନିଜେ ସେହି ଓଦା ଲୁଗାରେ ନଡ଼ିଆଟି ଫେରାଇ ଦେଇ ଆସିଲା । ଏ ପିଲାଟି କିଏ ?

ସେହି ହରିହର – ପ୍ରତ୍ୟେକ ଦିନ ଘରୁ ସ୍କୁଲକୁ ପ୍ରାୟ ୨୦ କିଲୋମିଟର ଯିବା ଆସିବା

କରନ୍ତି । ସେତେବେଳେ ସମୁଦାୟ ଜିଲାରେ ଏକ ମାତ୍ର ପୁରୀ ସହରରେ ହିଁ ଗୋଟିଏ ହାଇସ୍କୁଲ । ହଷ୍ଟେଲରେ ରଖି ପାଠ ପଢ଼େଇବାକୁ ବାପାଙ୍କର ତ ପଇସା ନାହିଁ । ଏଣୁ ଯିବା ଆସିବା କରିବା ଛଡ଼ା ଉପାୟ ନ ଥିଲା । ଖରାଦିନେ ନିର୍ଧୁମ ଖରାବେଳେ ଘରକୁ ଫେରିବା ବେଳେ ଗୋଡ଼ ଘୋଳାଇ ପଡ଼େ । ଖରାଦିନିଆ ସ୍କୁଲ ଓଳିକିଆ ହୋଇଥାଏ । ସ୍କୁଲ ଛୁଟି ହେଲାପରେ ହରିହର ସମୁଦ୍ର କୂଳକୁ ଯାଆନ୍ତି ପହଁରିବା ପାଇଁ । ଖରା ନଇଁଲେ ଘରକୁ ଫେରନ୍ତି । ସେ ସମୟରେ ପୁଅମାନେ ତାଙ୍କ ବୟସରେ ବି ଝଟ ରଖୁଥିଲେ । ବାଟରେ ଆସୁ ଆସୁ ସମୁଦ୍ର-ପାଣିରେ ଓଦା ହୋଇଥିବା ଲୁଗାକୁ ଶୁଖାନ୍ତି । ମାତ୍ର ବାଟରେ ବର୍ଷା ହେଲେ ତ ଲମ୍ବା କେଶ ଶୁଖିପାରେ ନା । ଓଦା କେଶରୁ ଓଷୁମୁଳିଆ ଗନ୍ଧ ତାଙ୍କୁ ବେଳେବେଳେ ବିରକ୍ତ କରେ । କିନ୍ତୁ ସମସ୍ତଙ୍କ ପରି ତାଙ୍କୁ ବି ଝଟ ରଖିବାକୁ ପଡ଼ିଥାଏ । ଥରେ ସାଙ୍ଗପିଲାମାନେ ଥଟ୍ଟା କରିବା ଛଳରେ ତାଙ୍କର ଚୁଟିଟିକୁ କାଟିଦେଲେ । ମାତ୍ର ଚୁଟିହୀନ ହରିହର ଯେତେବେଳେ ଘରକୁ ଆସିଲେ ଗାଁଆର ସମସ୍ତେ ଆଶଙ୍କା କଲେ ଯେ, ହରିହର ଇଂରାଜୀ ପାଠ ପଢ଼ି ଖିରସ୍ତାନ ହେବାକୁ ବସିଛନ୍ତି । ଅବଶ୍ୟ ହରିହର ନିଜେ ଚୁଟି ରଖିବାର ପକ୍ଷପାତୀ ନ ଥିଲେ । ମାତ୍ର ସାଇପଡ଼ିଶାଙ୍କ ଡରରେ ତାଙ୍କର ସେତକ ରହିଥିଲା । ସାଙ୍ଗ ଜଣକ ଲୁଚାଇ କରି ଯଦି କାଟି ଦେଲେ, ତେବେ ସେ ଆଉ କ'ଣ କରି'ଥାଆନ୍ତେ ? ପ୍ରଥମେ ଅକଡ଼େଇଲେ ସୁଦ୍ଧା ପରେ ସାଇପଡ଼ିଶା ଲୋକେ ବୁଝିଗଲେ । ହରିହର ଖିରସ୍ତାନ ହେଲେ ନାହିଁ । ବ୍ରାହ୍ମଣ ହୋଇ ରହିଲେ ।

ହରିହର ଏଣ୍ଟ୍ରାନ୍ସ୍ ପାସ କରି ଏଫ୍.ଏ ପଢ଼ିଲେ । କଲେଜ ପଢ଼ାର ପ୍ରଥମ ଦୁଇ ବର୍ଷକୁ କୁହାଯାଉଥିଲା ଏଫ୍.ଏ ବା ଫାଷ୍ଟ ଇନ୍ ଆର୍ଟସ । ବିଜ୍ଞାନ ଓ କଳା — ଏ ଉଭୟ ବିଷୟ ଏଫ୍.ଏ. କ୍ଲାସରେ ପଢ଼ା ଯାଉଥିଲା । ବିଜ୍ଞାନ ସମ୍ପର୍କିତ ପ୍ରୟୋଗ କରିବାଲାଗି ଟେଷ୍ଟ ଟିଉବ୍‌ର ଅଭାବ । ବିଶି ଆଙ୍ଗୁଳିକୁ ଆଗକୁ ବଢ଼େଇ ଅଧ୍ୟାପକ କହୁଥିଲେ "ମନେ କର ଏଇଟି ହେଲା ଟେଷ୍ଟ ଟିଉବ୍ । ତାହାହେଲେ...." ।

ରେଭେନ୍ସା କଲେଜ ସେତେବେଳେ କଟକରେ ଏକ ମାତ୍ର କଲେଜ । ଏଣୁ କଟକ ଆସିବାକୁ ହେଲା । ସରକାରୀ ବୃତ୍ତି ମଧ୍ୟ କିଛି ମିଳୁଥାଏ । ଘରୁ କିଛି ସାହାଯ୍ୟ ଆସେ । ବିଶେଷ ଅସୁବିଧା ହୁଏ ନାହିଁ । ଏଣ୍ଟ୍ରାନ୍ସ୍ ପାସ୍ କଲା ବେଳକୁ ହରିହରଙ୍କର ବିବାହ ସରି ଯାଇଥାଏ । ବ୍ରାହ୍ମଣ ଘରମାନଙ୍କରେ ପୂର୍ବେ ବାଲ୍ୟବିବାହ ଚଳୁଥିଲା । ଏଣୁ ସେ ତାହା ମାନି ନେଇଥିଲେ । ସେତେବେଳେ ପିଲା ବୟସରେ ବାହାହେବାର ବିଧାନ ଥିଲା । ତାଙ୍କର ସ୍କୁଲ ଶିକ୍ଷକ ମଧୁସୂଦନ ମିଶ୍ରଙ୍କ ଝିଅ ଟେରି ସହିତ ହରିହରଙ୍କ ବିବାହ ଘଟିଲା ମାତ୍ର ବାଳିକା ପତ୍ନୀ ବେଶୀ ଦିନ ବଞ୍ଚି ନ ଥିଲେ । ହରିହର ଏଫ. ଏ. ପଢ଼ିଲା ବେଳେ ତାଙ୍କର ସ୍ତ୍ରୀ ମରିଯାଇଥିଲେ । କିନ୍ତୁ ପତ୍ନୀଙ୍କର ସ୍ୱରୂପ ହରିହର ଦେଖି ନ ଥିଲେ ।

କଟକରେ ପଢ଼ିଲାବେଳେ ବଢ଼ିଲା ନଈରେ ପହଁରିବା ତାଙ୍କର ଗୋଟିଏ ସଉକ । ସେଥରକ କଲେଜର ଗଣେଶ ମେଢ଼ ବୁଡାଇବାକୁ ସାଂଗ ପିଲାମାନଙ୍କ ସଙ୍ଗେ ସେ ଯାଇଥାଆନ୍ତି । ମେଢ଼

କାଠଯୋଡ଼ିର ପାଣିରେ ଭସେଇଦେଇ ଅନେକେ ପହଁରିବାରେ ଲାଗିଲେ । ହରିହର ମଧ୍ୟ ଭାଗନେଲେ । ଭଉଁରୀ ଖେଳୁଥାଏ । ସୁଅ ପଡିଥାଏ । ବୁଡ଼ି ବୁଡ଼ି ନଈ ମଝିକୁ ସେ ଚାଲିଗଲେ । ଏକା ନିଶାରେ ତ ଚାଲିଥାଆନ୍ତି । ପଛକୁ ବୁଲି ଚାହିଁଲାବେଳକୁ ସେ ଏକାକୀ ନଈ ମଝିରେ ଅଥଚ ଅନ୍ୟମାନେ କୂଳକୁ ଫେରିଲେଣି । ଟିକେ ଭୟହେଲା । ସେ ଖୁବ୍ ବେଗରେ କୂଳକୁ ଲେଉଟିଲେ । କାଠଯୋଡ଼ିର ପୁରୁଣା କଲେଜ ତୁଠର ବୁରୁଜ ଛୁଇଁବାକୁ ଆଉ ପ୍ରାୟ ପନ୍ଦର ହାତ ବାକୀ ଅଛି, ସେ ସଂପୂର୍ଣ୍ଣ ଥକି ପଡ଼ିଲେ । ଭାସିବା ବଦଳରେ ବୁଡ଼ିବାକୁ ଲାଗିଲେ । ନଈର ସୁଅ ତାଙ୍କୁ କାନ୍ଥ କଡ଼କୁ ନେଇ ଆସିଲା । ବଳସିନା ସରି ଯାଇଥାଏ, ବୁଡ଼ିଯାଉଥିଲେ ବି ବୁଦ୍ଧି ତ ଥାଏ । ଏଣୁ ପଥର ଖଣ୍ଡରେ ହାତଭରା ଦେଇ ଉଠିବାକୁ ଚେଷ୍ଟାକଲେ । ପଥରରେ ତ ଟିପ ମାଡ଼ିବାକୁ ଫାଙ୍କ ନାହିଁ । ଦୁଇଥର ଚେଷ୍ଟାକରି କିଛି ହେଲା ନାହିଁ । କିନ୍ତୁ ତୃତୀୟଥର, ଡାହାଣ ହାତର ବୁଢ଼ା ଆଙ୍ଗୁଳି-ନଖ ତାଙ୍କୁ ରଖିନେଲା । କୌଣସି ପ୍ରକାରେ ଅକସ୍ମାତ ନଖଟା ତାଙ୍କର ମାଙ୍କଡ଼ା ପଥରର ସନ୍ଧିରେ ପଶିଗଲା । ସେ ଉଠି ଆସିଲେ । ଟୋକା ବୟସରେ ବୁଡ଼ି ଯାଉ ଯାଉ ଯେଉଁ ନଖ ତାଙ୍କୁ ରକ୍ଷାକଲା, ତା ପ୍ରତି ତାଙ୍କର କେମିତି ଗୋଟାଏ ମମତା ରହିଯାଇଥିଲା । ସେଥିପାଇଁ ସେ ଟିକିଏ ଲମ୍ବା ନଖ ରଖୁଥିଲେ ।

କଲେଜ ହଷ୍ଟେଲରେ ଥିବାବେଳେ ପଣ୍ଡିତ ଗୋପବଂଧୁ ବର୍ଷେ ତାଙ୍କ ସାଂଗରେ ଥିଲେ । ପରବର୍ତ୍ତୀ କାଳର ପଣ୍ଡିତ ନିଳକଣ୍ଠ ଦାସ ପଣ୍ଡିତ ହୋଇ ନଥାନ୍ତି । ପାଠ ପଢ଼ିବାକୁ କଟକ ଆସିଥାଆନ୍ତି । ତାଙ୍କ ନାମ ଥାଏ କଣ୍ଠ । ହରିହର ନୀଳକଣ୍ଠ ଏକା ବଖରାରେ ରହୁଥାଆନ୍ତି । ଥରେ ନରସିଂହପୁରର ରାଜବୈଦ୍ୟ ହଷ୍ଟେଲ ଭିତରକୁ ଆସିଲେ । ରାଜାଘର ବୈଦ୍ୟ କି ନା ! ସେଥିପାଇଁ ତାଙ୍କର ସବୁତକ ଔଷଧ ମିଠା । ପଢ଼ାସାଥୀ ଗୋପବନ୍ଧୁ ବାବୁ ଝାଡ଼ା ସଫା କରାଇବା ପାଇଁ କିଛି ଔଷଧ ତାଙ୍କଠାରୁ ରଖିଲେ । ଖାଇବାକୁ ତ ଭାରି ମିଠା । ସେମିତି ସାଥୀ ପିଲାମାନଙ୍କର ସମସ୍ତଙ୍କର ମନ ହୁଏ ସେଥିରୁ ଟିକେ ଟିକେ ଖାଇବାକୁ । ପ୍ରତ୍ୟେକ ଅନ୍ୟମାନଙ୍କୁ ଲୁଚାଇ ଔଷଧ ସେବା କରନ୍ତି । ଔଷଧ ତ ଠଣାରେ ଥାଏ । ଚିନ୍ତା କ'ଣ ! କିନ୍ତୁ କେହି ଜାଣିପାରୁ ନ ଥା'ନ୍ତି ଯେ ବୋତଲଟା ଏତେ ଚଞ୍ଚଳ ଖାଲି ହେଉଛି କେମିତି !

ଦିନେ ହରିହର କଲେଜରୁ ଫେରି କୋଠରୀ ଭିତରକୁ ପଶିଲା ବେଳକୁ କଣ୍ଠବାବୁ ଫାଁ କରି ପଡ଼ିଥାଆନ୍ତି । ବିସୂଚୀକା ରୋଗରେ ଆକ୍ରାନ୍ତ ରୋଗୀପରି ତରଳ ଝାଡ଼ା ଗୁଡ଼ା ବହିଯାଇ ଘରସାରା ଭାସୁଥାଏ । ଦେହଟା ତାଙ୍କର ପୂରାପୂରି କାଲୁଆ ମାରିଯାଇଥାଏ । ହଇଜା ଡରେ, ଅନ୍ୟ ସାଥୀମାନେ ସେ କୋଠରୀରୁ ପଳାଇ ଯାଇଥାଆନ୍ତି । ହଷ୍ଟେଲର ଆଉ କେହି ଦରଜା ମଧ ମାଡୁ ନ ଥାନ୍ତି । ଏଣୁ ଏକୁଟିଆ ଲାଗିପଡ଼ି ହରିହର ପ୍ରଥମେ ଘରଟାକୁ ସଫା କରିଦେଲେ । ରୋଗୀର ପହିଲି ଚିକିତ୍ସା ଯାହା କରିବାର କଥା, କଲେ । ବୈଦ୍ୟ ମହାଶୟଙ୍କୁ ଖବର ଦିଆଗଲା । ସେ ଆସି ଔଷଧ ପତ୍ରର ବ୍ୟବସ୍ଥା କଲେ । ରାତି ସାରା ହରିହର କଣ୍ଠଙ୍କୁ ଜଗି ବସିଲେ । ନରସିଂହପୁରର ମିଠା ଔଷଧ ଦୟାରୁ ହରିହର ପ୍ରଥମ ଥର ପାଇଁ ରୋଗୀସେବା କଲେ । ତା' ପରେ ସେ ବହୁତ ରୋଗୀସେବା କରିଛନ୍ତି । ଏମିତି କେତେ ଅନୁଭୂତି ତାଙ୍କର ଦେହସୁହା ହୋଇଯାଇଛି । ହେଲେ

ସେବକ-ଜୀବନର ପହିଲି ଅନୁଭୂତି ସେ ଭୁଲି ନାହାନ୍ତି ।

(୩)

ସୁଆଣ୍ଡୋ ଗାଁରେ ଗୋପବନ୍ଧୁଙ୍କର ଘର । ଶ୍ରୀରାମଚନ୍ଦ୍ରପୁରରୁ ଅନେକ ପିଲା ଇସ୍କୁଲରେ ପାଠ ପଢୁଥା'ନ୍ତି । ଏଣୁକରି ଗୋପବନ୍ଧୁଙ୍କର ସେମାନଙ୍କ ସଂଗେ ପରିଚୟ ଘଟେ । କେତେବେଳେ ଗୋପବନ୍ଧୁ ଶ୍ରୀରାମଚନ୍ଦ୍ରପୁରକୁ ଆସନ୍ତି ତ, ଆଉ କେତେବେଳେ ଏଠା ପିଲେ ସେ ଗାଁକୁ ବୁଲିବାକୁ ଯାଆନ୍ତି । ଛୁଟି ଦିନ ହେଲେ ଭାରି କଉତୁକ ହୁଏ । ଗୋପୀ ଭାଇନା, ଗୋପବଂଧୁ, ହରି, କଣ୍ଠ, କୃପାସିନ୍ଧୁ, ଅନନ୍ତ ପ୍ରଭୃତି ସବୁ ପିଲାଙ୍କର ଏକାଠି ବସିବା ଓ ଏକାଠି ଖାଇବା ହୁଏ । କେତେ ରକମର ଗପସପ ଚାଲେ । ଗୋପବଂଧୁଙ୍କ କଥାଗୁଡ଼ା ଏପରି ସରସ ଆଉ ଥଟ୍ଟାଳିଆ ଯେ, ସମସ୍ତେ ସେଥିରେ ହସି ହସି ନାକେଦମ୍ ।

ସେଇମିତି ଗୋଟିଏ କଥା:-

ନଡ଼ିଆ ପତ୍ରର ଚଟ ଉପରେ ଗାମୁଛା ବିଛେଇ ଶୋଇବା ହୁଏ । କାଠ ପିଢ଼ାଟିଏ ଲେଖାଏଁ ମୁଣ୍ଡ ତଳେ ଦେଇ ସେମାନେ ଶୁଅନ୍ତି କାରଣ ସମସ୍ତଙ୍କ ପାଇଁ ଯୋଗାଇଲା ଭଳି ସଂଖ୍ୟାରେ ତକିଆ ମହଯୁଦ ନଥାଏ । ମୁଣ୍ଡ ତଳର କାଠ ପିଢ଼ାକୁ ଗୋପବନ୍ଧୁ ଦାସ କହନ୍ତି ''କାଷ୍ଠିଭୂତ ନର୍ମଦା'' — ଅର୍ଥାତ୍ ତାହା ନରମ ଦିଏ ମୁଣ୍ଡକୁ । ମାତ୍ର ତିଆରି ହୋଇଛି କାଠରେ । ନାନା ପ୍ରକାର ଥଟ୍ଟା କଥା କହିପାରିଲେ ସୁଦ୍ଧା ସେ ଜଣେ ବୁଦ୍ଧିମାନ ଛାତ୍ର ଥିଲେ ।

ରେଭେନ୍‌ସା କଲେଜରେ ଗୋପବନ୍ଧୁ ବାବୁ ଥାଆନ୍ତି । ହରିହର ଆସି ତାଙ୍କ ପାଖେ ଯୁଟିବାରୁ ଉଭୟେ ଏକା ବଖରାରେ ରହିଥାଆନ୍ତି । ଗୋପବନ୍ଧୁବାବୁଙ୍କର ବହି ଧରିଲେ ନିଦ ଆସେ । ଏଣୁ ରାତିରେ ବେଶି ସମୟ ଅନିଦ୍ରା ରହି ସେ ପଢ଼ନ୍ତି ନାହିଁ । ଗୋପବଂଧୁବାବୁ ଖୁବ୍ ବୁଦ୍ଧିମାନ ଛାତ୍ର ଥିଲେ । ଏଣୁ ଅଳ୍ପ ସମୟ ବହି ଦେଖିଦେଲେ ତାଙ୍କର ଚଳିଯାଏ । ସଂଧ୍ୟାବେଳକୁ ହରିହର ଏବଂ ଗୋପବଂଧୁ ଉଭୟେ ବୁଲିବାକୁ ଯାଆନ୍ତି । ଫେରିବାବେଳକୁ ରାତି ପ୍ରାୟ ଆଠଟା ।

କଲେଜ ହତାରୁ କାଠଯୋଡ଼ି କିମ୍ବା ମହାନଦୀ କୂଳଯାଏ ଚାଲି ଚାଲି ଯାଇ ସେଠୁ ଫେରିବା ବେଳକୁ ବେଶ୍ ଥକ୍କା ଲାଗିଥାଏ । ଭୋକ ବି ହୁଏ । ମେସ୍‌ରେ ଖାଇବା ପାଇଁ ଟେବୁଲ ପଡ଼ିଥାଏ । ମାତ୍ର ଟେବୁଲ ଉପରେ ଗୋପବଂଧୁ ବାବୁ ରୋଷେଇ ଘରେ ଚକା ପକାଇ ଖାଆନ୍ତି । ଉଭୟେ ଖାଇ ବସିବାବେଳକୁ ରନ୍ଧା ସରି ନ ଥାଏ । ଗୋପବନ୍ଧୁଙ୍କ ଆସନ ପକେଇବା ଦେଖି ତରକାରୀ ଛୁଙ୍କଦିଆ ହୋଇ ନ ଥାଉ କି ଭାତ ଦର ଫୁଟିଥାଉ କିଛି ଯାଏ ଆସେନା । ପୂଝାରୀ ଦେଇଦିଏ । ଖାଇବସିବାବେଳେ ଗୋପବଂଧୁ ବାବୁ କେତେ ରକମର ଗପ ଆରମ୍ଭ କରନ୍ତି । ଏଣେ ଅନ୍ୟମାନଙ୍କର ଖାଇବା ପାଇଁ ପ୍ରସ୍ତୁତି ସରି ଯାଇଥାଏ । ଦ୍ୱିତୀୟ ଥର ପରଷିବା ବେଳକୁ ପୂଝାରୀ ପେଜଗଳା ଭାତ ଆଉ ବଘରା ଡାଲି, ତରକାରୀ ଦେଇଦିଏ । ସମସ୍ତେ ଯୁଟନ୍ତି । ଗପ ଜମେ । ଦୁନିଆର ଏ ମୁଣ୍ଡରୁ ସେ ମୁଣ୍ଡଯାଏ କେତେ କଥା ପଡ଼େ । ଶ୍ରୋତା, ବକତା ସମସ୍ତେ ହସି ହସି ବେଦମ୍ ।

ଗୋପବଂଧୁ ବାବୁ ଜଣେ ଧୂରନ୍ଧର ଯୁବକ ଥିଲେ । ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କରିବା, କବିତା

ଲେଖିବା, ବକ୍ତୃତା ଦେବା, ଗାଁର କାମ କରିବା, ସବୁଥିରେ ସେ ପାରଙ୍ଗମ ଥିଲେ । ଏଣୁ ହରିହର ତାଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ଥିଲେ । ତାଙ୍କରି ଆଦର୍ଶରେ ହରିହର ସିଦ୍ଧାନ୍ତ କଲେ ଯେ, ସେ ସରକାରୀ ଚାକିରୀ କରିବେ ନାହିଁ ।

ଦେଶ ତ ପରାଧୀନ ଥାଏ । ଏଣୁ ସ୍ୱାଧୀନତା ପାଇଁ ମଧ ଲଢ଼ିବାକୁ ହେବ । କେବଳ ଜଣେ ଗୋପବଂଧୁ କି ଜଣେ ହରିହର ଏହା ତୁଲାଇ ପାରିବେ ନାହିଁ । ବହୁତ ଲୋକ ଦରକାର । ଏଣୁ ନୂଆ ପାଠ ସୃଷ୍ଟି କରିବାକୁ ହେବ । ସେ ମନେ ମନେ ପଣ କଲେ – ଜଣେ ଆଦର୍ଶ ଶିକ୍ଷକ ହେବାକୁ ।

କେବଳ ପ୍ରତିଜ୍ଞା କରିଦେଲେ କୌଣସି କାର୍ଯ୍ୟ ପୂରା ହୋଇଯାଏ ନାହିଁ । ଏଥିଲାଗି ଜୀବନ ପଣ କରି ଚେଷ୍ଟା କରିବାକୁ ପଡେ । ପରିବେଶ ମଧ ଦରକାର । ଓଡ଼ିଶା ସାରା ନ ହେଲେ ବି, ଅନ୍ତତଃ ନିଜ ଅଞ୍ଚଳରେ ଗୋଟିଏ ନୂଆ ପ୍ରକାରର ଇସ୍କୁଲ କରିବାର ପ୍ରସ୍ତାବ ଗୋପବଂଧୁ ବାବୁଙ୍କର ଥିଲା । ଅନ୍ୟମାନଙ୍କ ମନକୁ ମଧ ତାହା ଠିକ୍ ରୂପେ ପାଇଲା । ଇତିମଧରେ ହରିହର କଟକରୁ ଏଫ.ଏ. ପାସ୍ କଲେ । ଆଉ ବି.ଏ. ପଢ଼ିବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ଇଂରେଜମାନେ ଲୋକଙ୍କୁ ଗୋଲାମ କରୁଛନ୍ତି । ତାଙ୍କ ପାଠ ପ୍ରତି ମନରେ ସେ ଘୃଣା ଭାବ ରଖିଲେ । ପୁଣି ତ ଗୋଟାଏ କିଛି କରିବାକୁ ହେବ ! ଏଣୁ ନିଜର କର୍ମପନ୍ଥା ଖୋଜିବାକୁ ଲାଗିଲେ ।

ଉଚ୍ଚଶିକ୍ଷା ଲାଗି ଏତିକି ବେଳେ ଓଡ଼ିଶାରୁ କେତେକ ପାଠୁଆ ଯୁବକଙ୍କୁ ଜାପାନ ପଠାଇବାର କଥା ଉଠିଲା । ପ୍ରେରକ ବିଜ୍ଞାପନ ଦେଲେ । ପ୍ରାର୍ଥୀମାନେ ନିବେଦନ କଲେ । ମାତ୍ର ଯୋଗତା ନିର୍ଣ୍ଣୟ କରିବାର ଭାର ଥାଏ ବାରିଷ୍ଟର ମଧୁସୂଦନ ଦାସଙ୍କ ଉପରେ ।

ହରିହର ମଧ ମନ କଲେ ଜାପାନ ଯିବାକୁ । ଗୋପବଂଧୁ ବାବୁଙ୍କ ପରାମର୍ଶ କ୍ରମେ ଦରଖାସ୍ତ କଲେ । ଶେଷରେ ତାଙ୍କୁ ଦେଖା ସାକ୍ଷାତ ପାଇଁ ଡକାଗଲା ।

ସେ ଦିନ ଦିନ ଦଶଟାରେ ହରିହର ମି: ଦାସଙ୍କ ଘରେ ପହଞ୍ଚିଲେ । ଇଂରେଜୀରେ ପ୍ରଶ୍ନ ହେଲା – ''ତୁମେ ଜାପାନ ଯିବାକୁ ଦରଖାସ୍ତ କରିଛ ?''

ହରିହର ଜବାବ ଦେଲେ, ''ହେଁ । '' କଲେଜ ସାର୍ଟିଫିକେଟ, ମେଡ଼ିକାଲ ସାର୍ଟିଫିକେଟ ଏବଂ ଅନ୍ୟାନ୍ୟ ପରିଚୟ ପତ୍ରଗୁଡ଼ିକୁ ମି: ଦାସ ଦେଖିଲେ । ଶେଷରେ ପ୍ରଶ୍ନ କଲେ, ''ତୁମର ଚରିତ୍ର (କ୍ୟାରେକ୍ଟର) ସାର୍ଟିଫିକେଟ ନାହିଁ ?''

ହରିହର କାବା ହୋଇଗଲେ । ମନକୁ ମନ କହିଲେ, ''ମୁଁ ଭଲ କି ମନ୍ଦ, ଅନ୍ୟର ଏ କଥା କହିବାରେ କ'ଣ ଅଛି ?'' ତହୁଁ ନିଃସଂକୋଚରେ ସେ ଜବାବ ଦେଲେ, ''ମୋ ଚରିତ୍ର ସିନା ମୁଁ ଜାଣେ । ଅନ୍ୟ ଜଣେ ଜାଣିବ କେମିତି ?''

– ସେତେବେଳର ପ୍ରସିଦ୍ଧ ଓକିଲ ମିଷ୍ଟର ଦାସ ବିସ୍ମୟରେ ଯୁବକଟି ଆଡ଼କୁ ଅନେଇ ରହିଲେ । ଅପେକ୍ଷା ନ କରି, ତାହା ପରେ ହରିହର ପଛକୁ ଫେରିଲେ ।

ଜାପାନ ଯିବା ପାଇଁ ମିଷ୍ଟର ଦାସ ବ୍ୟବସ୍ଥା କଲେ । କିନ୍ତୁ ଛାତିର ଓସାର କମ୍ ଥିବାରୁ ସେ ଜାପାନ ଯାଇ ପାରିଲେ ନାହିଁ ।

ଗୋପବଂଧୁ ବାବୁ ତାଙ୍କଠାରୁ ଦୁଇ ବର୍ଷ ବଡ଼ ଥିଲେ । ସେତେବେଳକୁ ସେ କଲିକତାରେ ଓକିଲାତି ପଢୁଥାଆନ୍ତି । ଓଡ଼ିଶାରେ ଓକିଲାତି ପଢ଼ିବାର ସୁବିଧା ସେତେବେଳକୁ ନ ଥାଏ । ଆଜିକାଲି ବି.ଏ. ପାସ୍ କଲେ ଯାଇ ଏହା ପଢ଼ାଯାଇ ପାରୁଛି । କିନ୍ତୁ ସେ ସମୟରେ ଏଫ.ଏ. ପାସ୍ କରିଥିଲେ ଓକିଲାତି ପଢ଼ାଯାଇ ପାରୁଥିଲା । ଗୋପବଂଧୁବାବୁ ହରିହରଙ୍କୁ ଓକିଲାତି ପଢ଼ିବାର ପରାମର୍ଶ ଦେଲେ । ହରିହର କଲିକତା ଗଲେ । ସେତେବେଳକୁ ଗୋପବଂଧୁ ବାବୁଙ୍କ ଓକିଲାତି ଅଧ୍ୟୟନ ଶେଷହୋଇ ଯାଇଥାଏ । ଆହୁରି ଅନେକ ଓଡ଼ିଆ ପିଲା ସେଠାରେ ଥାଆନ୍ତି ।

ତାଙ୍କ କଥାରେ ପଡ଼ି ସିନା ହରିହର ଆଇନ୍ ପଢ଼ିବାକୁ ଆସିଥିଲେ । କିନ୍ତୁ ଓକିଲାତି କଲେ ଦରକାର ବେଳେ ମିଛ କହିବାକୁ ହେବ — ମନ ଲାଗିଲା ନାହିଁ । ଆଉ ଏ ପାଠ ପଢ଼ିବେ ନାହିଁ ବୋଲି ଠିକ୍ କଲେ । ସେହିଦିନୁ ତାଙ୍କ ଓକିଲାତୀ ପୋଥିରେ ଡୋର ବନ୍ଧା ହେଲା । ହରିହର ଓକିଲ ହେଲେ ନାହିଁ ।

ଏତିକିବେଳେ ତାଙ୍କର ଦ୍ୱିତୀୟ ବାର ବିବାହ ହେଲା । କିଛି ଦିନ ପରେ ବାପା ମରିଗଲେ । ଛୋଟ ଭାଇମାନଙ୍କୁ ମଣିଷ କରିବାଠାରୁ ଘରର ଜାବତୀୟ ଦାୟିତ୍ୱ ପଡ଼ିଲା, ଏଥର ଯୁବକ ହରିହରଙ୍କ ଉପରେ । କାରଣ ସେ ଥିଲେ ନନା(ବାପା)ଙ୍କର ବଡ଼ପୁଅ ।

(୪)

ଏତିକିବେଳେ ହରିହରଙ୍କର ବଂଧୁ ଶ୍ରୀ ଉମାଚରଣ ପଟ୍ଟନାୟକ ତାଙ୍କୁ ନୀଳଗିରିକୁ ଡାକିଲେ । ସେଠାରେ ଗଡ଼ଜାତମାନଙ୍କ ଭିତରେ ହୁଏ ତ ପ୍ରଥମ କରି ଏକ ହାଇସ୍କୁଲ ପ୍ରତିଷ୍ଠାର ଉଦ୍ୟମ ନୂଆ ହୋଇ କରାଯାଉଥାଏ । ଉମାଚରଣ ବାବୁ ପ୍ରଧାନ ଶିକ୍ଷକ ଏବଂ ହରିହର ସହକାରୀ ଭାବେ କାର୍ଯ୍ୟ କଲେ । କେତେଦିନ ପରେ ଉମାଚରଣ ବାବୁଙ୍କୁ ଡେପୁଟି ଚାକିରୀ ମିଳିଲା । ତହୁଁ ସେ ଗୋପବଂଧୁ ବାବୁଙ୍କୁ ଅନୁରୋଧ କଲେ, ନୀଳଗିରିରେ ପ୍ରଧାନ ଶିକ୍ଷକତା କରିବା ପାଇଁ । ଗୋପବଂଧୁ ବାବୁଙ୍କର ଶିକ୍ଷା ପ୍ରସାର ଦିଗରେ, ବିଶେଷତଃ ଗଡ଼ଜାତ ଅଂଚଳରେ ଶିକ୍ଷାପ୍ରସାର ପ୍ରତି ବିଶେଷ ଝୁଙ୍କ ଥିଲା । ତହୁଁ ସେ ରାଜି ହୋଇ ନୀଳଗିରି ଗଲେ । ସେ ପ୍ରଧାନ ଶିକ୍ଷକ ଓ ହରିହର ଏବଂ ଶ୍ରୀ ଯଦୁନାଥ ମହାପାତ୍ର ହାଇସ୍କୁଲର ସହକାରୀ ଶିକ୍ଷକ ହେଲେ । କିଛି ଦିନ ପରେ ପଲିଟିକାଲ ଏଜେଣ୍ଟ (ଯେ କି ଗଡ଼ଜାତ ଦାୟିତ୍ୱରେ ଥିଲେ) ମନା କରିଦେଲେ ଯେ ''ଗଡ଼ଜାତରେ ହାଇସ୍କୁଲ ପ୍ରତିଷ୍ଠା ହୋଇପାରିବ ନାହିଁ ।'' ତହୁଁ ଗୋପବଂଧୁବାବୁ ନୀଳଗିରିରୁ ଚାଲି ଆସିଲେ । ହରିହର ମଧ୍ୟ ରହିଲେ ନାହିଁ ।

ସେହି ସମୟରେ କଟକରେ କଲିଜିଏଟ୍ ସ୍କୁଲର ଜଣେ ଶିକ୍ଷକ ଛୁଟି ନେଇ ଥାଆନ୍ତି । ଏଣୁ ତାଙ୍କ ବଦଳରେ ଆଉ ଜଣେ ଶିକ୍ଷକଙ୍କୁ ସେମାନେ ଖୋଜୁଥାଆନ୍ତି । ହରିହରଙ୍କୁ ସ୍କୁଲ ତରଫରୁ ଅନୁରୋଧ କରାଗଲା । ମାତ୍ର କଲେଜିଏଟ ସ୍କୁଲ ତ ସରକାରୀ ସ୍କୁଲ । ହରିହରଙ୍କର ସିଦ୍ଧାନ୍ତ ଥିଲା ଯେ ସେ ସରକାରୀ ଚାକିରୀ କରିବେ ନାହିଁ । ଏଣୁ ଏ ପ୍ରସ୍ତାବରେ ପ୍ରଥମେ ସେ ରାଜି ହୋଇପାରିଲେ ନାହିଁ । ଛୁଟି ନେଇଥିବା ଶିକ୍ଷକ ଜଣକ ଆସିବା ପର୍ଯ୍ୟନ୍ତ, ନିତାନ୍ତ କାମ ଅଚଳ ଅବସ୍ଥାକୁ ଚଳେଇ

ନେବାପାଇଁ ପରେ ସେ ଏଥିରେ ରାଜି ହେଲେ ।

ତିନି ମାସ ପର୍ଯ୍ୟନ୍ତ ସେ ଶିକ୍ଷକ ଜଣକ ଫେରିଲେ ନାହିଁ । ସରକାରୀ ସ୍କୁଲରେ ଅଧିକକାଳ ରହିବାର ଧୈର୍ଯ୍ୟ ତାଙ୍କର ନ ଥିଲା । ମାତ୍ର ତିନିମାସ ପରେ ସେ ନୀଳଗିରି ଛାଡ଼ିଲେ ।

ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ନେତୃତ୍ୱରେ ଏକ ବେସରକାରୀ ହାଇସ୍କୁଲ କଟକଠାରେ ପ୍ରତିଷ୍ଠିତ ହୋଇଥାଏ । ଲୋକଙ୍କ ଭିତରେ ଜ୍ଞାନ ପ୍ରସାରର ଆକାଂକ୍ଷା ତ ଏହା ପଛରେ ଥାଏ । ତା'ଛଡ଼ା ଜାତୀୟତାବୋଧର କିଛିଟା ଛିଟିକା ମଧ୍ୟ ଉଦ୍ୟୋକ୍ତାମାନଙ୍କ ଉପରେ ପଡ଼ିଥାଏ । ପ୍ୟାରୀମୋହନ ଏକାଡେମୀ ତରଫରୁ ତାଙ୍କୁ ଶିକ୍ଷକତା କରିବା ପାଇଁ ଅନୁରୋଧ କରାଗଲା ଓ ସେ ତାହା ଗ୍ରହଣ କଲେ । ଏକାଡେମୀର ଅନେକ ଶିକ୍ଷକଙ୍କ ସହିତ ପୂର୍ବରୁ ତାଙ୍କର ବଂଧୁତା ଥିଲା ଏବଂ ପ୍ରଧାନ ଶିକ୍ଷକ ଶ୍ରୀ ନିମାଇଁ ଚରଣ ଚଉ ପଟ୍ଟନାୟକ ମହାଶୟେ ତାଙ୍କୁ ପୂର୍ବରୁ ଜାଣିଥିଲେ । ସ୍କୁଲରେ ପାଠ ପଢ଼ାଇବାକୁ ଆରମ୍ଭ କରିବା ପୂର୍ବରୁ କମନ୍‌ରୁମ୍‌ରେ ଜଣେ ଅଧେ ଶିକ୍ଷକ ହରିହରଙ୍କୁ ସତର୍କ କରାଇ କହିଲେ, ''ଦେଖନ୍ତୁ ଏଇଟା କଟକ ସହର । ପିଲାଗୁଡ଼ା ଭାରୀ ଚଗଲା । ଟିକିଏ ଜଗିରଖି ନ ଚଳିଲେ କେତେବେଳେ କୋଉ କଥା !''

ଶିକ୍ଷକ ବଂଧୁମାନଙ୍କ କଥା ହରିହରଙ୍କୁ ବିଶେଷ କିଛି ପ୍ରଭାବିତ କଲା ନାହିଁ । ସେ ମନେ କଲେ — ଛୋଟ ପିଲାଗୁଡ଼ାଙ୍କର ଚଗଲା ବୁଦ୍ଧି । କେତେବେଳେ ଟିକିଏ ଦୁଷ୍ଟାମୀ କରିଦେଉ ଥିବେ !

ତା' ପରେ ସେ ସୋପାନକୁ ଗଲେ ପଢ଼ାଇବା ପାଇଁ । ଛୋଟ ସୋପାନରେ ଇଂରାଜୀ ଓ ବଡ଼ ସୋପାନରେ ଗଣିତ ବଢ଼ାଇଲେ । ଅନ୍ୟ ଶିକ୍ଷକମାନେ ଚେୟାରରେ ବସି ପାଠ ପଢ଼ାନ୍ତି । ମାତ୍ର ହରିହର ଏପରି କରନ୍ତି ନାହିଁ । ଠିଆ ହୋଇ ପଢ଼ାଇବା ତାଙ୍କର ଅଭ୍ୟାସ । ସେ ସିନା ନାନା ପ୍ରକାର ଚେଷ୍ଟା କରି ବିଷୟଟା ବୁଝାନ୍ତି । ମାତ୍ର ପଛ ଧାଡ଼ିରେ ବସିଥିବା ଡେଙ୍ଗା ତାଗଡ଼ା ଟୋକାଗୁଡ଼ାକ ମୋଟେ ଖିଆଲ ରଖି ନ ଥାନ୍ତି । ଆଖି କଳାପଟାରେ ଥାଏ । ମୁହଁ ସାର୍‌ଙ୍କ ହାତକୁ ଥାଏ । ମାତ୍ର ସେମାନଙ୍କର ହାତ, ଗୋଡ଼ ଯାଇ ନାନାରକମର ଫେଚକାମୀ କରୁଥାଏ । ଆଗ ପିଲାମାନେ ତ ସବୁବେଳେ ଶିକ୍ଷକଙ୍କ ଆଖି ଆଗରେ ଥାଆନ୍ତି । ଏଣୁ ସେ ପଛ ପିଲାଙ୍କୁ ଅଧିକ ଧ୍ୟାନ ଦେଲେ ।

ଦୁଷ୍ଟ ପିଲାଙ୍କୁ ବାଟକୁ ଆଣିବାକୁ ସେ ଗୋଟିଏ ନୂଆ ରକମର କୌଶଳ କଲେ । ଖାଲି ସ୍କୁଲରେ ପଢ଼ିବାକୁ ପରାମର୍ଶ ନ ଦେଇ ନିଜେ ସେମାନଙ୍କ ଘରଠାକୁ ଗଲେ । ପିଲାଙ୍କ ଗତିବିଧି ଲକ୍ଷ୍ୟ କଲେ । ସେମାନଙ୍କ ବାପା, ମା'ଙ୍କ ସହିତ ତାଙ୍କର ସଂପର୍କ ରହିଲା । ପିଲାଏ ବି ମାଗଣା ପାଠ ପଢ଼ିବାର ସୁବିଧା ପାଇଲେ ଓ ସେମାନଙ୍କର ପାଠପଢ଼ାରେ ମନ ଲାଗିଲା । ଫଳରେ ନୂଆ ମାଷ୍ଟରଙ୍କୁ 'କେତେବେଳେ କୋଉ କଥା' କରନ୍ତେ କ'ଣ ଓଲଟି ଦୁଷ୍ଟ ପିଲାମାନେ ତାଙ୍କୁ ଆଦରି ଗଲେ ।

ଅଳ୍ପଦିନ ମଧ୍ୟରେ ସେଠାରେ ଶିକ୍ଷକ ଏବଂ ଛାତ୍ର ସମସ୍ତେ ହରିହରଙ୍କୁ ଭଲ ପାଇବାକୁ ଲାଗିଲେ । କାରଣ ସେ କାହାରି ଦୋଷ ଦେଖନ୍ତି ନାହିଁ । ଦେଖିଲେ ମଧ୍ୟ ବିରକ୍ତି ନ ହୋଇ ଦୋଷୀକୁ ବୁଝେଇବାରେ ଲାଗନ୍ତି । ସ୍କୁଲରେ କୌଣସି ଉତ୍ସବ କରାଗଲେ ହରିହର ହିଁ ଏଣିକି ତା'ର ଦାୟିତ୍ୱ ନିଅନ୍ତି । କାରଣ ସ୍କୁଲର ବଡ଼ ବଡ଼ ପିଲାଏ ତାଙ୍କୁ ମାନିଥାନ୍ତି । ଅନ୍ୟ ଶିକ୍ଷକମାନେ ପିଲାମାନଙ୍କ

ଉପରେ ବିଶେଷ କିଛି ପ୍ରଭାବ ପକାଇ ପାରୁ ନ ଥା'ନ୍ତି । ଓଲଟି 'ବଜାରୀ ପିଲା' ବୋଲି କହି ସେମାନଙ୍କୁ ଭୟ କରନ୍ତି ।

ଥରେ ସ୍କୁଲପାଇଁ କେତେକ ଖେଳ ଜିନିଷ କିଣିବାର କଥା ହେଲା । କିନ୍ତୁ ଆବଶ୍ୟକ ପଇସା ସ୍କୁଲରେ ନ ଥିଲା । ଲଟାରୀ କରି ପିଲାଙ୍କଠାରୁ ଟଙ୍କା ଆଦାୟ କରିବା ପାଇଁ କେତେକ ଶିକ୍ଷକ ପ୍ରସ୍ତାବ ଦେଲେ । ପ୍ରଧାନ ଶିକ୍ଷକ ଚଉ ପଟ୍ଟନାୟକେ ଏଥିପାଇଁ ସମସ୍ତଙ୍କର ମତ ଲୋଡ଼ିଲେ । ହରିହରଙ୍କୁ ପଚରାଯିବାରୁ ସେ କହିଲେ, ''ଲଟାରୀ ହେଉଛି ବିନା ପରିଶ୍ରମରେ ବେଶୀ ପାଇବାର ବୁଦ୍ଧି ବା ଠକାମୀର ଲକ୍ଷଣ । ଜାଣିଶୁଣି ଆମେ ଏ ପ୍ରକାରର ଠକାମୀ, ପିଲାମାନଙ୍କୁ କାହିଁକି ଶିଖାଇବା ?''

ପ୍ରଧାନ ଶିକ୍ଷକ ମହାଶୟ କଥାଟା ବୁଝିଗଲେ । ସ୍କୁଲରେ ଆଉ ଲଟେରୀ ହେଲା ନାହିଁ ।

## (୪)

ସେତେବେଳେ ହରିହର କଟକର ସାହେବଜାଦା ବଜାରରେ ରହୁଥାଆନ୍ତି । ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କର ସେଠାରେ ଗୋଟିଏ ଘର ଥାଏ । ସେହି ଘରେ ଏକାଡେମୀର କେତେକ ଛାତ୍ରଙ୍କୁ ନେଇ ସେ ରହୁଥାଆନ୍ତି । ତାକୁ 'ଶସ୍ତା ମେସ୍' କୁହା ଯାଉଥାଏ । କାରଣ ସେ ମେସ୍‌ରେ ପ୍ରତିଦିନ ଭାତ ଡାଲମା ରନ୍ଧାଯାଏ । କୌଣସି ଚାକର ବା ପୂଝାରୀ ନ ଥା'ନ୍ତି । ପିଲାମାନେ ନିଜର ସବୁକାମ ନିଜେ ତୁଲାଇ ନିଅନ୍ତି । ଶିକ୍ଷକ 'ହରିବାବୁ' ସେମାନଙ୍କର ପଢ଼ା ପଢ଼ିର ଯତ୍ନ ନିଅନ୍ତି । ପିଲାମାନଙ୍କର ଖର୍ଚ୍ଚ ଏଥିପାଇଁ କମ୍ ପଡ଼େ ମଧ ।

ସେହି ଘରକୁ ଲାଗି ପଛପଟେ ଆଉ ଏକ ଘର ଥାଏ । ସେଠାରେ କେତେକ ଛାତ୍ରଙ୍କୁ ନେଇ ହରିହର କୁସ୍ତି, କସରତ୍, ତରବାରୀ ଓ ବାଡ଼ିଖେଳ ପ୍ରଭୃତି ଶିକ୍ଷା ଦିଅନ୍ତି । ନିଜେ ମଧ ଅଭ୍ୟାସ କରନ୍ତି । କୁସ୍ତି କସରତ୍ ସାଙ୍ଗକୁ ନାନାରକମର ଆସନ ମଧ କରାଯାଏ । ହରିହର ନିଜେ ଶୀର୍ଷାସନ ଓ ସର୍ବାଙ୍ଗାସନ ନିୟମିତ ଭାବରେ କରନ୍ତି ।

ଥରେ ପୁରୀ ଜିଲ୍ଲାର କାକଟପୁର ଅଞ୍ଚଳରେ ଭାରି ବନ୍ୟା ହେଲା । ସେଠାର ବନ୍ୟାବିପନ୍ନ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ହରିହର ଦଳେ ସ୍ୱେଚ୍ଛାସେବୀ ଛାତ୍ରଙ୍କୁ ସାଙ୍ଗରେ ଧରି କ୍ଷତିଗ୍ରସ୍ତ ଅଞ୍ଚଳକୁ ବାହାରିଲେ । ଏଇଟା ତାଙ୍କର ପିଲା ଦିନିଆ ଅଭ୍ୟାସ । କଟକରେ ଶ୍ରୀଯୁକ୍ତ ସତ୍ୟନାରାୟଣ ସେନ୍‌ଗୁପ୍ତ ପ୍ରମୁଖ ଏକ 'ବନ୍ୟା ସାହାଯ୍ୟ କମିଟୀ' ଗଠନ କରିଥାଆନ୍ତି । କେତେକ ସ୍ୱେଚ୍ଛାସେବକ ଛାତ୍ରଙ୍କୁ ସାଙ୍ଗରେ ଧରି ହରିହର 'ବନ୍ୟା ସାହାଯ୍ୟ କମିଟୀ'ଙ୍କ ଠାରୁ କିଛି ଚୁଡ଼ା, ଚାଉଳ ଓ ଟଙ୍କା ନେଇ କାକଟପୁର ଚାଲିଲେ । ସ୍ୱେଚ୍ଛାସେବକମାନଙ୍କୁ ବିଭିନ୍ନ ଅଞ୍ଚଳକୁ ବାଣ୍ଟିଦେଲେ ।

ଦିନକପରେ ଗହ୍ମା ପୂର୍ଣ୍ଣମୀ । ଘରେ ଘରେ ପିଠା ପଣାର ଉତ୍ସବ ଲାଗିବ । ହରିହରଙ୍କ ସାଙ୍ଗରେ ଗୋଟିଏ ପିଲା ଥାଏ । ତା'ର ଭାରିମନ ହେଲା ଘରକୁ ଫେରିବା ପାଇଁ । ମାତ୍ର ଛାଡ଼ି ଯାଉଥିବା ବଢ଼ି ପାଣି ପୁଣି ମାଡ଼ି ଆସୁଥାଏ । ପିଲାଟି ଘରକୁ ଯିବାଲାଗି ଜିଦ୍‌ଧରି ବସିଲା । କହିଲା, ''ମୋ ନାଁ ଦେଶହିତୈଷୀ ତାଲିକାରୁ କାଟି ଦିଅନ୍ତୁ ପଛକେ ମୁଁ ଘରକୁ ଯିବି ।'' ଚାରିଆଡ଼େ ତ

ସମୁଦ୍ର ! ହରିହର ତାକୁ ଏକାକୀ ଛାଡ଼ନ୍ତେ କେମିତି ? ତା'ଛଡ଼ା ସ୍ୱେଚ୍ଛା-ସେବକମାନଙ୍କର ଆପଣା କାର୍ଯ୍ୟ ଛାଡ଼ିଦେଇ ଫେରିବା ଠିକ୍ ନୁହେଁ ।

ହରିହର କେତେ ବୁଝାଇବାକୁ ଲାଗିଲେ । ଶେଷରେ ପିଲାଟି ହଁ ଭରିଲା । କିନ୍ତୁ ସାରଙ୍କ ଶୋଇଥିବାର ସୁଯୋଗ ନେଇ ରାତି ପାହାନ୍ତାରୁ ଉଠି ପଳାଇ ଗଲା ।

କୁଆଡ଼େ ଥଳକୂଳ ନାହିଁ । ପିଲାଟାକୁ ପାଖରେ ନ ଦେଖି ହରିହର ପ୍ରମାଦ ଗଣିଲେ । ଟିକିଏ ପାଣି ଛାଡ଼ି ଯିବାରୁ ଯିବା ଆସିବାର ସୁବିଧା ହେଲା । ହରିହର ସଙ୍ଗେ ସଙ୍ଗେ ସେ ପିଲାଟିର ଘରକୁ ଗଲେ । ସେତେବେଳକୁ ସେ ଘରେ ପହଁଚି ସାରିଥାଏ । ପ୍ୟାରୀମୋହନ ଏକାଡେମୀରେ ତାଙ୍କର ଛାତ୍ରମାନଙ୍କ ଭିତରେ ଥିଲେ ଯଦୁମଣି ମଙ୍ଗରାଜ — ସ୍ୱାଧୀନତା ସଂଗ୍ରାମୀ ଓ ପରବର୍ତ୍ତୀ କାଳର ବିଧାନ ସଭାର ଉପବାଚସ୍ପତି । ଶିକ୍ଷକ ହରିହରଙ୍କ ପରାମର୍ଶ କ୍ରମେ କଟକ ସହରର ଖୁବ୍ ଜଣାଶୁଣା ଓକିଲ ଗୋକୁଳାନନ୍ଦ ଚୌଧୁରୀ ତାଙ୍କ ସାନପୁଅ ନବକୃଷ୍ଣଙ୍କ ନାଆଁ ମଧ୍ୟ ପ୍ୟାରୀମୋହନ ଏକାଡେମୀରେ ଲେଖାଇଥିଲେ । ପରବର୍ତ୍ତୀ କାଳରେ ନବକୃଷ୍ଣ ଚୌଧୁରୀ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ।

## (୬)

କିଟିମିଟି ଅନ୍ଧାରରେ ମୁହଁକୁ ମୁହଁ ଭଲ କରି ଦିଶେ ନା । ଅନୁମାନ କରି ଖାଲି ଚିହ୍ନି ନେବା କଥା । ମାତ୍ର ଯେମିତି ଗୋଟେ ଦିଆସିଲି କାଠି ଜଳିଉଠେ, ସାଙ୍ଗେ ସାଙ୍ଗେ କିଟିମିଟି ଅନ୍ଧାର କୁଆଡ଼େ ଚାଲିଯାଏ । ଠିକ୍ ସେହିପରି ଆଜି ମହାତ୍ମା ଗାନ୍ଧୀଙ୍କ ନାଁଟା ସମସ୍ତଙ୍କ ପାଖରେ ଜଳନ୍ତା ମଶାଲ ପରି ଦେଦୀପ୍ୟମାନ; ମାତ୍ର ଆଜିକି ପ୍ରାୟ ଶହେ ବର୍ଷ ପୂର୍ବେ ଏପରି ବ୍ୟାପକ ଭାବେ ତାଙ୍କୁ କେହି ଜାଣି ନ ଥିଲେ ।

ସେତେବେଳେ ଭାରତ ଏକ ପରାଧୀନ ଦେଶ । ଜ୍ଞାନ, ବିଜ୍ଞାନ ଆଦି ସବୁ ଦୃଷ୍ଟିରୁ ସେ ଗୋରା ଲୋକଙ୍କର ବହୁତ ପଛରେ ।

ଏଠି ତ ପୁଣି ମଣିଷ ଅଛନ୍ତି ! ସେମାନେ ଆଉ କେତେ ଦିନକାଳ ପଛୁଆ ହୋଇ ରହି ଥାଆନ୍ତେ ? ଏଣୁ ଏଠାର କେତେକ ଲୋକ ନିଜ ଦେଶବାସୀଙ୍କୁ ଉନ୍ନତ କରିବା ପାଇଁ ଉଦ୍ୟମ କଲେ । ଲୁଚି ଛପି ଗୋରା ଲୋକଙ୍କ ଉପରେ ଆକ୍ରମଣ କରିବା, ଦରକାର ହେଲେ ହାତାହାତି କାରବାର କରିବା ଆଦି ପାଇଁ ଅନେକ ତାଙ୍କରି କଥାରେ ପ୍ରସ୍ତୁତ ହେଲେ ।

ପିଲାଦିନରୁ ହରିହରଙ୍କ ମୁଣ୍ଡରେ ଖେଳୁଥିଲା- ଏ ଦେଶକୁ ସ୍ୱାଧୀନ କରିବା କଥା । ନୂଆ ଦେଶର ନୂଆ ଲୋକ କିପରି ତିଆରି କରିବାକୁ ହେବ ।

'ବଙ୍ଗଭଙ୍ଗ' ଆନ୍ଦୋଳନ ଭାରତସାରା ଚହଳ ପକାଇ ଦେଇଥାଏ । ଅନେକ ବିପ୍ଳବୀ ଦଣ୍ଡ ଭୋଗ କରୁ ଥାଆନ୍ତି । ଏ ଘଟଣାର ପ୍ରଭାବ ହରିହରଙ୍କ ଉପରେ ମଧ୍ୟ ପଡୁଥାଏ । ବ୍ରଜବାବୁଙ୍କ ଘରେ ସେ ଯେଉଁ କୁସ୍ତି-କସରତର ଆଖଡ଼ା ଚାଲିଥିଲା, ତା'ର ଏକ ବଡ଼ କାରଣ ଥିଲା । ତାହା ହେଉଛି ନୂଆ ଲୋକ ତିଆରି କରିବା- ଯେଉଁମାନେ କି ନିଜକୁ ସବୁ ରକମର ବିପଦରେ ଚଳେଇ

ନେଇ ପାରିବେ ।

ବୟସ ବେଶି ଟପି ଗଲାପରେ ବି ନିଜ ଯୁବକ ବୟସର କଥାଗୁଡ଼ାକ ହରିହରଙ୍କ ମନରୁ ପୂରାପୂରି ଯାଇ ନ ଥାଏ । ବେଳେବେଳେ ''ତମେ ସବୁ କ'ଣ କରୁଛ ମ ! ଆମେ ତ ପିଲା ବେଳେ ବାଡ଼ି, ତରବାରୀ ବି ଖେଳୁଥିଲୁ । ଏବେ ସିନା ସେ ଗୁଡ଼ାକ ଅକାମୀ ହୋଇ ଗଲାଣି । ହେଲେ ତମ ବାହୁରେ ମାଂସପେଶୀ କାହିଁ ?''

ହେଇ ସେ ଦିନ ! ଆପଣା ପିଲାଦିନ କଥାଟା କହୁଁ କହୁଁ ଚମ ବଳି ହୋଇ ଯାଇଥିବା ହାତଟାକୁ ଟାଣ କରି କହି ପକାଇଲେ- ''ଫୁଟବଲ ଖେଳୁ ଖେଳୁ ମୋ ଆଣ୍ଠୁ ବାଜି ଛଣକର ଦାନ୍ତ ପରା ଗଳି ପଡ଼ିଥିଲା ।''

ଅଶୀବର୍ଷରୁ ଅଧିକ ପୁରୁଣା ଦେହଟାରେ ଚମ ବଳି ହୋଇଥିଲା ପରି ଦିଶୁଥାଏ । ପାକୁଆ ପାଟିରେ ଦାନ୍ତ ନ ଥାଏ । ଦାଢ଼ୀ ଏକଦମ୍ ପାକଲା ତଥାପି ବୀରତ୍ୱ କ୍ଷେତ୍ରରେ ସେ ବେଶ୍ ଦୁର୍ଦ୍ଦାନ୍ତ ଛଣା ପଡ଼ନ୍ତି ।

ହଁ, ଗୋପବନ୍ଧୁବାବୁ ସେତେବେଳେ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥାଆନ୍ତି । ହରିହର ଥାଆନ୍ତି ପ୍ୟାରୀମୋହନ ଏକାଡେମୀରେ ଶିକ୍ଷକ । କିନ୍ତୁ ଉଭୟଙ୍କ ମନରେ ନିଜ ମନ ମୁତାବକ ଏକ ସ୍କୁଲ କରିବାର ଚିନ୍ତା ଖେଳୁ ଥାଏ ।

ହରିହର ଦେଖିଲେ ଯେ ତାଙ୍କ ଉପରେ ଗୋଟାଏ ବିରାଟ ଦାୟିତ୍ୱ ରହିଛି । ତାହା ହେଲା, ପିଲାଙ୍କୁ ପାଠ ପଢ଼ାଇବା । ପ୍ରତ୍ୟେହ ରାତି ଦୁଇଟାରୁ ସେ ଉଠନ୍ତି । ନିଜର ନିତ୍ୟକର୍ମ, ପୂଜାପାଠ ଓ ଆସନ ସମାପନ କରି ପ୍ରାୟ ଭୋର ୪ଟାରୁ ସକାଳ ୭ଟା ପର୍ଯ୍ୟନ୍ତ ସ୍କୁଲ ପିଲାଙ୍କ ଖାତା ଦେଖିବାରେ ଲାଗି ଯାଆନ୍ତି । ଏବେ ପଚାରିଲେ, ସେ କହିପକାନ୍ତି, ''ପିଲାଙ୍କ ଖାତା ହିଁ ରାତି ଦୁଇଟାରୁ ମୋ ନିଦ ଭଙ୍ଗାଇ ଦିଏ ।'' ତା'ପରେ ଆରମ୍ଭ ହୁଏ ବୁଲା ଚଲା । ଚଗଲା ପିଲାମାନଙ୍କୁ ଘରକୁ ପାଳି କରି ଯାଇ ନିଜେ ସେମାନଙ୍କୁ ପାଠ ପଢ଼ିବାରେ ସେ ସାହାଯ୍ୟ କରନ୍ତି । ଦୁଇ ଘଣ୍ଟା ପରେ ଫେରି ଆସନ୍ତି 'ଶସ୍ତା ମେସ୍'କୁ । ଭାତ ଓ ଡାଲମା ହୋଇ ଯାଇଥାଏ । ଖାଇ ଦେଇ ସ୍କୁଲକୁ ଯା'ନ୍ତି । ରାତିରେ ମେସ୍‌ରେ ଥିବା ପିଲାମାନଙ୍କୁ ପାଠ ପଢ଼ାନ୍ତି ।

ପ୍ୟାରୀମୋହନ ଏକାଡେମୀରେ ଥିବା ସମୟରେ ପିଲାମାନଙ୍କ ପାଇଁ ହରିହର ଖଣ୍ଡିଏ 'ଇଂରାଜୀ-ଓଡ଼ିଆ ବ୍ୟାକରଣ' ବହି ଲେଖିଥିଲେ । ଯେଉଁମାନେ ସେ ଖଣ୍ଡିକ ପଢ଼ିଛନ୍ତି, ସେମାନେ ବୁଝିଛନ୍ତି ଯେ, ତା'ର ଉପାଦେୟତା କେତେ ବେଶୀ ! ତା' ନା 'ଚାଇଲ୍‌ଡ୍‌ସ ଇଜି ଫାଷ୍ଟ ଗ୍ରାମାର ।' ପ୍ରକୃତରେ ଏ ବହିଟିର ନାଁଆ ଫାଷ୍ଟ ଗ୍ରାମାର ଫର ଦି ଚିଲେଡ୍ରେନ କିମ୍ବା ଚିଲେଡ୍ରେନ୍‌ସ୍ ଇଜି ଗ୍ରାମାର ବୋଲି ହେବା ଉଚିତ ଥିଲା । ତଥାପି ଓଡ଼ିଶାର ପିଲାଙ୍କୁ ଇଂରାଜୀ ବ୍ୟାକରଣ ଶିଖାଇବାରେ ଆଚାର୍ଯ୍ୟ ହରିହରଙ୍କ ଦ୍ୱାରା ଲିଖିତ ଏ ବହିଟିର ଅବଦାନ କିଛି କମ୍ ନୁହେଁ ।

## (୭)

''ପାଠୁଆ ପିଲାଗୁଡ଼ାଙ୍କୁ ଖୁବ୍ କମ୍ ଆଶା । ପଢ଼ିସାରି ସେମାନେ ଯେ ବ୍ରାହ୍ମଣ ହୋଇ ରହିବେ

— ଏଥିରେ ବିଶ୍ୱାସ ନାହିଁ ।'' — ଏହା ହିଁ ଥିଲା ସେ ଯୁଗର ତଥାକଥିତ ଶାସନୀ ବ୍ରାହ୍ମଣମାନଙ୍କର ବିଶ୍ୱାସ । ଏକାବେଳକେ ବାଜେ କଥା ନୁହେଁ । ଏହାର ମଧ ଗୋଟେ କାରଣ ଅଛି ।

ପ୍ୟାଣ୍ଟ ପିନ୍ଧିବାର ତ ପ୍ରଶ୍ନ ହିଁ ନ ଥିଲା । ସେତେବେଳେ ଚୁଟି ରଖୁଥିଲେ । ସବୁବେଳେ କଚ୍ଛାମାରି ଲୁଗା ପିନ୍ଧୁଥିଲେ । ପଇତା ପକାଉ ଥିଲେ । ତା'ଛଡ଼ା ଦାଢ଼ୀ କାଟି ଦେଉଥିଲେ । ନିଶ ରଖୁ ନ ଥିଲେ ।

ମାତ୍ର ଯେଉଁ ବ୍ରାହ୍ମଣ ପିଲେ ସ୍କୁଲକୁ ଯାଉଥିଲେ, ସେମାନେ ଦେଖୁଥିଲେ ସବୁ ଓଲଟା-ମାନେ ତାଙ୍କରି ବୟସର ପିଲା ନାକ ତଳକୁ ନିଶ ରଖି ମୁହଁଟାକୁ ବେଶ୍ ମନେଇଛନ୍ତି, ଲୁଙ୍ଗି ମାରିବା ପାଇଁ ମନା କିମ୍ବା ପଇତା ପକେଇବାର ବନ୍ଧନ ସେମାନଙ୍କର ନାହିଁ, ମୁଣ୍ଡରେ ଗୁଡ଼ାଏ ଚୁଳ ନ ରଖି ମାଙ୍ଗୁ ଭାଙ୍ଗୁଛନ୍ତି । ଫଳରେ ସେମାନେ ହତାଶ ହୁଅନ୍ତି ଓ ଏକବାଗିଆ ହୋଇ ସ୍କୁଲରେ ରହିବାକୁ ସେମାନଙ୍କୁ ଭଲ ଲାଗେନା । ସାଧାରଣ ପିଲାଙ୍କୁ ସେମାନେ ଅନୁକରଣ କରନ୍ତି ।

ଏସବୁ ସିନା ସ୍କୁଲର ଚାରିକାନ୍ଥ ଭିତରେ କିମ୍ବା ବାହାରେ ଚଳିଯିବ । କିନ୍ତୁ ଯେଉଁଠି ପ୍ରତ୍ୟେକ ଦିନ ଠାକୁର ପୂଜା ହେଉଛି, ସେହି ବ୍ରାହ୍ମଣ ସାହିରେ ଚଳିବ କିପରି ? ଏଣୁ ଯେଉଁ ପାଠୁଆ ପିଲେ ଚିରାଚରିତ ପ୍ରଥା ବ୍ରାହ୍ମଣଘରର ବ୍ୟତିକ୍ରମ ଘଟାନ୍ତି, ସେମାନଙ୍କୁ ପ୍ରାୟଶ୍ଚିତ କରିବାକୁ ପଡ଼େ । ତାଙ୍କର ବାପା, ପୁଅର ଦୋଷ କ୍ଷମା ପାଇଁ ହଇରାଣ ହୁଅନ୍ତି । ନ ହେଲେ ସେମାନଙ୍କୁ ବ୍ରାହ୍ମଣ ସମାଜରୁ ଅଲଗା ହୋଇ ଯିବାକୁ ପଡ଼େ । ଏ ସବୁ ସଂସ୍କାର ଯୁବକ ହରିହରଙ୍କୁ ମୋଟେ ଭଲ ଲାଗେ ନା । ତା'ଛଡ଼ା ପିଲାଦିନରୁ ତାଙ୍କର ଏଥିପ୍ରତି ଏକ ଘୃଣା ଭାବ ଥାଏ । ଏଣୁ ଗୋପବନ୍ଧୁ ବାବୁ ଓ ହରିହର ଉଭୟେ ଭାବି ଭାବି ଠିକ୍ କରିଥିଲେ ଯେ, ନିଜଠୁଁ ଏହାର ବ୍ୟତିକ୍ରମ ଆରମ୍ଭ କରିବାକୁ ହେବ ।

ଏକଥା ହଠାତ୍ କେହି ଜାଣି ପାରିଲେ ନାହିଁ । ଏକାଡେମୀର ଛାତ୍ରମାନେ ଦେଖିଲେ ଯେ, ହରିବାବୁଙ୍କ ଦାଢ଼ୀଗୁଡ଼ାକ କ୍ରମେ ବଢ଼ହୋଇ ଆସୁଛି । ସେ କାଟୁ ନାହାନ୍ତି । ତାଙ୍କୁ ତ କେହି ଡରନ୍ତି ନାହିଁ । ଜଣେ ଛାତ୍ର ପଚାରି ଦେଲା, ''ସାର, ଦାଢ଼ୀ କାଟୁ ନାହାନ୍ତି କାହିଁକି ?'' ଉତ୍ତର ମିଳିଲା — ''ପଇସା ନାହିଁ ! ଦାଢ଼ି କାଟିବି କିପରି ?'' ତା' ପରେ ଖାଲି ଟିକିଏ ହସ ।

ଗାଆଁକୁ ଆସିଲେ ଗାଁଆ ଲୋକେ ବି ସେଇକଥା ପଚାରନ୍ତି । ଉତ୍ତର ମିଳେ ସେହି ଏକା ପରି । କେହି ବୁଝି ପାରନ୍ତି ନାହିଁ । ଗାଁଆ ଟୋକାମାନଙ୍କୁ ନେଇ ସେ ଅନେକ ଜରୁରୀ କାମରେ ଲାଗି ଯାଆନ୍ତି । ସ୍କୁଲ ଘର କରିବା, ନଇଁଯୋଡ଼ିକୁ ପୋତି ପକାଇ, ତା' ଉପରେ ରାସ୍ତା କରିବା, କେହି ବେମାର ହେଲେ କିମ୍ବା ଆଖପାଖରେ କିଛି ରୋଗ ବ୍ୟାପିଲେ, ତା'ର ତୁରନ୍ତ ପ୍ରତିକାର ବ୍ୟବସ୍ଥା କରିବା ଥିଲା ତାଙ୍କର ଅନ୍ୟତମ କାମ ।

ବାପା ମହାଦେବ ବ୍ରହ୍ମାଙ୍କର ଦେହାନ୍ତ ପରେ ଘରର ମୁରବୀ ହରିହର । ସୁତରାଂ ଗାଁଆ ଲୋକେ ଅନେକ କଥା ଭରସି କରି ତାଙ୍କୁ କହି ପାରନ୍ତି ନାହିଁ । କହିବାକୁ ନିଜକୁ ଖରାପ ଲାଗେ । କାରଣ ହରିହର ଭାରି ଭଲ ପିଲା । ସବୁରି ଭଲ ମନ୍ଦ ବେଳେ ହାଜର । ଏଥିପାଇଁ ବୁଢ଼ାମାନେ ତାଙ୍କୁ ସ୍ନେହ କରନ୍ତି । ତା'ଛଡ଼ା ଟୋକା ମାନଙ୍କର ତ ସେ 'ହରିଭାଇନା' ।

(୮)

ପୂର୍ବରୁ ଶ୍ରୀରାମଚନ୍ଦ୍ରପୁର ଗାଆଁରେ ଯେଉଁ ପୁରୁଣା ଭର୍ଣ୍ଣାକୁଲାର ସ୍କୁଲଟା ଥିଲା, ଗୋପବଂଧୁ ବାବୁ ପ୍ରମୁଖ ତାକୁ ମାଇନର ସ୍କୁଲ କରିବାର ଉଦ୍ୟମ କଲେ । ମାଇନର ସ୍କୁଲର ପ୍ରକୃତ ନାଆଁ ହେଲା ମିଡିଲ ଇଂଲିଶ ସ୍କୁଲ । ଏହା ଥିଲା ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ । ଶେଷ ଦୁଇବର୍ଷ ପାଇଁ ଏହି ସ୍କୁଲର ପିଲାମାନେ ଇଂରାଜୀର ବର୍ଣ୍ଣବୋଧ ଓ ବ୍ୟାକରଣ ଇତ୍ୟାଦି ପଢ଼ିବାର ସୁଯୋଗ ପାଉଥିଲେ । ୪ର୍ଥ ଶ୍ରେଣୀରୁ ଏ.ବି.ସି.ଡି. ପିଲାମାନଙ୍କୁ ପଢ଼ାଯାଉଥିଲା । ନୀଳକଣ୍ଠଙ୍କର କଲେଜ ପଢ଼ା ସରିଯାଇଥାଏ । ଏଣୁ ନୂଆ ସ୍କୁଲଟିକୁ ପୂରାଦମ୍‌ରେ ସେହିଁ ଆରମ୍ଭ କଲେ । ସେ ଗାଆଁର ଶ୍ରୀ ଗୋପୀନାଥ ଦାସ ଡିପୋଟି ହୋଇ ସାରି ଥା'ନ୍ତି । ଆଉ କେତେକ ଯୁବକ ସରକାରୀ ଚାକିରୀ ମଧ କରିଥାଆନ୍ତି । କଥା ହେଲା ଯେ ଗାଁଆର ସବୁ ସରକାରୀ ଚାକିରୀଆମାନେ ଆପଣାର ମାସକର ଦରମା ସ୍କୁଲ ପାଇଁ ଦେବେ । ସମସ୍ତେ ଏ କଥା ମାନିଲେ । ସେତେବେଳେ ଶ୍ରୀ ମଧୁସୂଦନ ରାଓ ଥାଆନ୍ତି ସ୍କୁଲ ବିଭାଗର ପରିଦର୍ଶକ । ସେ ମଧ ସରକାରୀ ମଂଜୁରୀ ଦେଇଦେଲେ ।

ଗୋପବଂଧୁ ବାବୁ ଅନ୍ୟ କାମରେ ବ୍ୟସ୍ତ ରହିଥିଲେ ସୁଦ୍ଧା ନୂଆ ଧରଣର ସ୍କୁଲ ପାଇଁ ମନେ ମନେ ଭାବୁଥାଆନ୍ତି । ଏଣୁ ହରିହର ଏକାଡେମୀରେ ମାଷ୍ଟର ଥାଇ ଗୋପବଂଧୁ ବାବୁଙ୍କ ପରାମର୍ଶକୁ ଅନେଇ ରହିଥାଆନ୍ତି ।

ଠିକ୍ ସେତିକିବେଳେ ଆଉ ଏକ ସୁବିଧା ଯୁଟିଲା । ଆଗରୁ ସିନା ଗୋପବନ୍ଧୁ ବାବୁ ଓ ହରିହର ନୂଆ ସ୍କୁଲ କଥା ଭାବୁଥିଲେ ମାତ୍ର ଏଥରକ ଆଉ କେତେକ ଯୁବକଙ୍କର ସନ୍ଧାନ ମିଳିଲା, ଯେଉଁମାନେ କି ସେହି କଥାରେ ଆଗ୍ରହୀ ଥିଲେ । ସେମାନଙ୍କ ନାମ ହେଲା ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ବାସୁଦେବ ଓ ଅନନ୍ତ । ପୂର୍ବରୁ ଗୋପବନ୍ଧୁ ବାବୁଙ୍କର ବିଚାର ଏମାନଙ୍କ ମନକୁ ପାଇଥିଲା ।

ଗୋପବନ୍ଧୁ ବାବୁ ଭାବିଥିଲେ ନୂଆ ସ୍କୁଲ ଲାଗି ଖାଲି ନୂଆ ଢଙ୍ଗର ପାଠପଢ଼ା ହେବ ନାହିଁ । ସବୁ ନୂଆ ପ୍ରକାର କଥା ହେବ । ଏପରିକି ସ୍କୁଲ ପାଇଁ ଚାରିକାନ୍ଥ ଘେରା ଘର ମଧ ହେବ ନାହିଁ । ବାହାରର ଥଣ୍ଡାପବନ, କୋଇଲିର କୁହୁକୁହୁ ସ୍ୱର, ଗଛର ସବୁଜ ପତର ଏବଂ ସୂର୍ଯ୍ୟର ଚକଚକିଆ ଖରା ଭିତରେ ପାଠପଢ଼ା ଚାଲିବ । ତେବେ ଏପରି ସ୍ଥାନ ମିଳିବ କେଉଁଠି ? ସେଦିନ ୪/୫ ଜଣ ଉତ୍ସାହୀ ଯୁବକଙ୍କ ଭିତରେ ଏଇ କଥା ନେଇ ଘମାଘୋଟ ଆଲୋଚନା ଚାଲିଥିଲା । ତା'ରି ଭିତରେ ଗୋପବନ୍ଧୁ ବାବୁ କହିଥିଲେ, ''ହଁ, ସେପରି ସ୍ଥାନ ଅଛି । ଖାଲି ଆମେ କରିପାରିଲେ ହେଲା ।'' ବକୁଳ ଏବଂ ଛୁରିଅନା ପରିବେଷ୍ଟିତ ସାକ୍ଷୀଗୋପାଳ ନିକଟବର୍ତ୍ତୀ ଏକ ଜାଗାକୁ ସେ ଦୃଷ୍ଟିରେ ରଖିଥିଲେ ।

ତା' ପରେ ?

ଖୋଲା ପବନ ଆଉ ଶାଗୁଆ ବଣ ଭିତରେ ସ୍କୁଲ ଚଳାଇବା ଆରମ୍ଭ ହୋଇଗଲା । ପୂର୍ବରୁ ତ ନୀଳକଣ୍ଠ ବାବୁ ମାଇନର ସ୍କୁଲଟି ଆରମ୍ଭ କରି ଦେଇଥିଲେ । ଏଥର ଏକାଡେମୀରୁ ବିଦାୟ ଘେନି ହରିହର ସେଠାରେ ପହଞ୍ଚିଲେ । ହାଇସ୍କୁଲଟି ସତ୍ୟବାଦୀର ବକୁଳକୁଞ୍ଜ ଭିତରେ ଆରମ୍ଭ

ହୋଇଗଲା ।

ପିଲାଦିନୁ ଗୋପବନ୍ଧୁ ବାବୁ ଓ ହରିହରଙ୍କ ମଧ୍ୟରେ ମଧୁର ସମ୍ପର୍କ ଭିତରେ ନୀଳକଣ୍ଠ ବେଶ୍ ଜାଗାମାଡ଼ି ବସିଥିଲେ । ଗୋପବନ୍ଧୁ ବାବୁ ତାଙ୍କଠାରୁ ଅନେକ ବଡ଼ କଥା ଆଶା କରୁଥିଲେ । କାରଣ ସେତେବେଳେ ଖୁବ୍ କମ୍ ଲୋକ ଓଡ଼ିଶାରେ ପାଠୁଆ ଥିଲେ । ଆଉ ପାଠ ପଢୁଆ ଲୋକଙ୍କ ଭିତରେ ଏମ୍.ଏ. ପାସ୍ କରିବାଙ୍କ ସଂଖ୍ୟା ଥିଲା ନିହାତି କମ୍ । ସେହି ନିହାତି କମ୍ ଲୋକଙ୍କ ମଧ୍ୟରେ ନୀଳକଣ୍ଠ କେବଳ ଜଣେ ନ ଥିଲେ, ପରାଧୀନ ଭାରତର ଗରିବ ଓଡ଼ିଆ ଲୋକଙ୍କ ପାଇଁ ତାଙ୍କ ଛାତି ଭିତରେ ଏକ ଦରଦ ଥିଲା । ନୂଆ ଢଙ୍ଗର ସ୍କୁଲ କରିବାକୁ ହେଲେ ନୂଆ ଲୋକ ଦରକାର । ଏଣୁ ଗୋପବନ୍ଧୁ ବାବୁ ନିଜର ସବୁ କାମ ଭିତରେ ଏଥିପାଇଁ ଆଖି ପକାଉଥିଲେ । ସେତେବେଳେ ଏମ୍.ଏ. ପଢୁଆ ଯୁବକ ଲିଙ୍ଗରାଜ ମିଶ୍ର, ଗୋଦାବରୀଶ ମିଶ୍ର ଓ କୃପାସିନ୍ଧୁ ମିଶ୍ର ତାଙ୍କର ଏହି ସନ୍ଧାନୀ ଆଖିକୁ ଏଡ଼ାଇ ପାରି ନ ଥିଲେ । ତା'ଛଡ଼ା ସେତେବେଳେ ଯେଉଁମାନେ ଦେଶ ଲୋକଙ୍କ ପାଇଁ କିଛି କରିବାକୁ ଚାହିଁବେ ଗୋପବନ୍ଧୁ ବାବୁଙ୍କ ଭଳି ଅଳ୍ପ କେଇଜଣ ଲୋକଙ୍କ ଚଲା ବାଟରେ ଯିବା ବ୍ୟତୀତ ସେମାନଙ୍କ ପାଇଁ ଆଉ କିଛି ଉପାୟ ନ ଥିଲା । ଗୋପବନ୍ଧୁ ବାବୁଙ୍କର ବିଭିନ୍ନ ଗୁଣ ସେତେବେଳେ ଏହି ଯୁବକମାନଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ଫଳରେ ବିଦ୍ୱାନ ନୀଳକଣ୍ଠ ବାବୁଙ୍କ ସହିତ ଗୋଦାବରୀଶ, କୃପାସିନ୍ଧୁ ଏବଂ ଲିଙ୍ଗରାଜ ମଧ୍ୟ ବକୁଳ କୁଞ୍ଜର ବିଦ୍ୟାଳୟରେ ଆସି ଯୁଟିଲେ । ହରିହର ତ ଥାଆନ୍ତି । ଗୋପବନ୍ଧୁ ବାବୁ ସବୁ ସମୟରେ ସ୍କୁଲରେ ରହି ପାରନ୍ତି ନାହିଁ । ବିଭିନ୍ନ କାମରେ ବିଭିନ୍ନ ଆଡ଼େ ତାଙ୍କୁ ଯିବାକୁ ପଡ଼େ । ଓକିଲାତି ମଧ୍ୟ ତାଙ୍କର ଚାଲିଥାଏ ।

ଆଜିପରି ସେତେବେଳେ ଓଡ଼ିଶା ସାରା ମଟର କିମ୍ବା ରେଳର ସେତେ ଚଳାଚଳ ନ ଥାଏ । ଯିବା ଆସିବା କରିବାର ଏତେ ସୁବିଧା କିମ୍ବା ସୁବ୍ୟବସ୍ଥା ନ ଥାଏ । ଯେଉଁମାନେ ପୁରୀକୁ ଜଗନ୍ନାଥ ଦର୍ଶନ କରିବାକୁ ଯାଉଥାଆନ୍ତି, ନାନା ରକମର ଆଶଙ୍କା ସେମାନଙ୍କ ମନରେ ପୂରି ରହିଥାଏ ।

ଆଜିର ଏଇ ରକେଟ ଯୁଗରେ ଆମ ଓଡ଼ିଶାରେ ଏବେ ବି ଗଞ୍ଜାମ, କୋରାପୁଟ, ଫୁଲବାଣୀ ଓ କଳାହାଣ୍ଡି ଜିଲ୍ଲାର କେତେକ ଅଞ୍ଚଳ ଅଛି, ଯେଉଁଠାକୁ ଯିବା ନିହାତି କଷ୍ଟକର । କିନ୍ତୁ ସେତେବେଳେ ବକୁଳବନର ଗୁଣ ଚାରିଆଡ଼େ ପ୍ରସରିଯାଇଥିଲା । ଶହ ଶହ ମାଇଲ ଦୂରରୁ ଅଭିଭାବକମାନେ ସେମାନଙ୍କ ପିଲାଙ୍କୁ ସେଠାକୁ ପଠାଉ ଥିଲେ । ପିଲାଏ ଚୂଡ଼ା-ଚାଉଳ ବାନ୍ଧି, କିଏ ଅବା ବହି ବସ୍ତାନି ମୁଣ୍ଡରେ ଲଦି ସପ୍ତାହେ କିମ୍ବା ପକ୍ଷେ ଚାଲି ଚାଲି ଆସି ସେଠାରେ ପହଞ୍ଚୁଥିଲେ ।

ଖାଲି ପାଠପଢ଼ା ଭିତରେ ସେଠା ସ୍କୁଲ ପିଲେ ମଜ୍ଜି ରହୁ ନ ଥିଲେ । ନାନା ରକମର ହାତକାମ କରୁଥିଲେ । ପ୍ରଥମତଃ ଏତେ ଗୁଡ଼ାଏ ପିଲାଙ୍କର ରହିବାପାଇଁ ଘର ଦରକାର; ଏଣୁ ପିଲାମାନେ ମିଳିତ ଚେଷ୍ଟାକରି ରହିବା ପାଇଁ ଘରର ଅନେକାଂଶ ନିଜେ ତିଆରି କରି ଠିଆ କରାଇ ଦେଲେ । ତା' ଛଡ଼ା ଖେଳିବା ଓ କସରତ କରିବାପାଇଁ ସମସ୍ତଙ୍କୁ ସୁବିଧା ଦିଆଗଲା । ପିଲାଏ ଖେଳିଲେ, ପଢ଼ିଲେ ଏବଂ ଅନ୍ୟ ସମୟରେ ଗୀତାନ୍ତ କରିବା, ଗୀତ ଲେଖିବା, ବକ୍ତୃତା ଦେବା ପ୍ରଭୃତି ବୁଦ୍ଧିଗତ ମଜଲିସ୍ ପାଇଁ ବି ସେମାନଙ୍କୁ ଉତ୍ସାହିତ କରାଗଲା ।

## (୯)

କ୍ରମଶଃ ସ୍କୁଲରେ ପିଲା ସଂଖ୍ୟା ବଢ଼ିଲେ । ହଷ୍ଟେଲରେ ଅଧିକରୁ ଅଧିକ ଛାତ୍ର ଯୁଟିଲେ । ସେମାନଙ୍କ ସଂଖ୍ୟା ଚାରିଶହରୁ ଅଧିକ ହେଲା । ତା'ଛଡ଼ା ଆଖ ପାଖର ପିଲାମାନେ ମଧ ହଷ୍ଟେଲରେ ରାତିରେ ରହି ପଢ଼ାପଢ଼ି କଲେ । ସେମାନେ ସାମୟିକ ଭୋଜନ ହଷ୍ଟେଲରେ କଲେ ।

ସ୍କୁଲର ସମସ୍ତେ ବଡ଼ ଲୋକ ଘରର ପିଲା ନ ଥାନ୍ତି । ଏଣୁ ମାସକୁ ମାସ ଅନେକ ପିଲା ଆପଣାର ଖର୍ଚ୍ଚ ଯୋଗାଇ ପାରନ୍ତି ନାହିଁ । ପାରିବାର ବଳ ମଧ ସେମାନଙ୍କର ନ ଥାଏ । ତା'ବୋଲି ସେମାନେ ହଇରାଣ ହୁଅନ୍ତି ନାହିଁ ।

ଆଜି ସିନା ମାସର ଠିକ୍ ସମୟରେ ଗରୀବ ବାପା, ମା' ଆପଣା ପିଲାର ଖର୍ଚ୍ଚ ଯୋଗାଇ ନ ପାରିଲେ ପିଲାଙ୍କୁ ବାହାର କରିଦିଆ ଯାଉଛି, ଦରମା ଡେରିରେ ଦେଲେ ଜୋରିମାନା ହେଉଛି କିମ୍ବା ଦେବାର ବଳ ନ ପାଇଲେ ପିଲା ପୋଥିରେ ଡୋର ବାନ୍ଧୁଛି; କିନ୍ତୁ ସତ୍ୟବାଦୀ ସ୍କୁଲର ଜାତକରେ ସେ କଥା ନ ଥିଲା । ସେଠାର ଶିକ୍ଷକମାନେ କେବଳ ଶିକ୍ଷିତ ନ ଥିଲେ । ଏ ଦେଶରେ କୁଶିକ୍ଷା ଏବଂ ଅଶିକ୍ଷା ସେମାନଙ୍କୁ ବାଧୁଥିଲା । ଏଣୁ ସେଠାରେ ପିଲାଏ କିପରି ଅଧିକରୁ ଅଧିକ ଶିକ୍ଷିତ ହେବେ, ଯୋଗ୍ୟ ହେବେ, ସେମାନେ ତାହା ଚାହୁଁଥିଲେ ।

ଚାରିଶହ ପିଲାଙ୍କୁ ଲାଗି ପୂଝାରୀ, ଟହଲିଆ ଆଦି ଦରକାର । ସେସବୁ କାମର ତ ପୁଣି ଆବଶ୍ୟକତା ଅଛି । ଏଣୁ ଗରୀବ ପିଲାମାନେ, ଯେଉଁମାନେ ମୋଟେ ଖର୍ଚ୍ଚ ଦେଇପାରନ୍ତି ନାହିଁ, କିଛି କାମ ହଷ୍ଟେଲର କରିଦିଅନ୍ତି । ବାହାରକୁ ଯେଉଁ ପଇସାଟା ପଳେଇ ଯାଆନ୍ତା, ସେମାନେ ସେହିଥିରେ ଚଳିଯାଆନ୍ତି ।

ସମୁଦାୟ ଶିକ୍ଷକ ଜୀବନରେ – ନୀଳଗିରି ଠାରୁ ଏକାଡେମୀ ପର୍ଯ୍ୟନ୍ତ ହରିହର ପିଲାଙ୍କ ଭିତରେ ହିଁ ରହି ଆସିଥିଲେ । ତା'ଛଡ଼ା ପିଲାଏ ମଧ ସହଜରେ ତାଙ୍କୁ ଭଲ ପାଆନ୍ତି । କାରଣ ସେ ରାଗନ୍ତି ନାହିଁ କି କେବେ ପିଟନ୍ତି ନାହିଁ । ଭରସି କରି ସେମାନେ ସବୁକଥା ତାଙ୍କୁ କହନ୍ତି । ଏଣୁ ହଷ୍ଟେଲ ଦାୟିତ୍ୱରେ ସେ ରହିଲେ ।

ଭୋର ଚାରିଟାରେ ଘଣ୍ଟା ବାଜେ । ସମସ୍ତେ ଉଠିବାର କଥା । ତେବେ ସବୁ ଜାଗାରେ ତ ଅଳସୁଆ ବୋଲି 'କେତେକ ଜୀବ' ଥାଆନ୍ତି । ସତ୍ୟବାଦୀର ବକୁଳକୁଞ୍ଜ ଭିତରେ ମଧ ସେମାନେ ଯୁଟି ଥାଆନ୍ତି । ସେମାନଙ୍କୁ ବିଛଣାରୁ ଉଠିବାକୁ ଡେରି ଲାଗେ । ଅନେକ ମଠୁଆ ପିଲା ଆପଣାର ସାଙ୍ଗ ସାଥୀଙ୍କୁ ବାହାରୁ ଶିକୁଳି ଲଗାଇ ଦେବାକୁ କହନ୍ତି । ମନେ କରନ୍ତି – ସାର୍ ଯେତେବେଳେ ଦେଖିବେ ଯେ, ବାହାରୁ ଶିକୁଳି ଲାଗିଛି, ସେତେବେଳେ ନିଶ୍ଚୟ ତାଙ୍କର ମନେହେବ ଭିତରେ କେହି ନାହାନ୍ତି । ତା'ଛଡ଼ା ହଷ୍ଟେଲର ସକାଳ ଉପସ୍ଥାନ ବେଳେ ନିଜପାଇଁ ଆଉ ଜଣକୁ ''ପ୍ରେଜେଣ୍ଟ ସର୍'' କହି ଦେବାକୁ ଅନ୍ୟପିଲାକୁ କହିଦେଇ ଥାଆନ୍ତି । ମାତ୍ର ହରି ବାବୁ ଆହୁରି ଚାଲାକ । କେତେ ପିଲାଙ୍କ ନାଡ଼ି ସେ ନିଜ ହାତରେ ଚିପିଛନ୍ତି ! ସକାଳର ଉପସ୍ଥାନ ବେଳେ ଏହିପରି ଚଗଲାମିର ଖୋରାକ୍ ପାଇ ସେ ପ୍ରତ୍ୟେକ ପିଲାଙ୍କୁ ଠିଆ ହୋଇ ଆପଣାର ଉପସ୍ଥିତି ଜଣାଇବାକୁ କହିଲେ ।

ଫଳରେ ଅନେକ ଠାପୁଆ ପିଲା ଧରା ପଡ଼ିଗଲେ ।

ଆଳସ୍ୟ ଏକ ମାନସିକ ରୋଗ । ଏହାର ନିରାକରଣପାଇଁ ଉପଯୁକ୍ତ ଚିକିତ୍ସକ ଏବଂ ଉପଯୁକ୍ତ ବ୍ୟବସ୍ଥା ଦରକାର । ତେଣୁ ହରିହର ସେହି ଅଳସୁଆ ପିଲାଙ୍କୁ ଅନ୍ୟମାନଙ୍କ ମଧ୍ୟରେ ମନିଟର ବା ମୁରବୀ କରିଦେଲେ । ଫଳରେ ଆପଣାର ମୁରବୀତ୍ୱ ଜଗି ସେହି ପିଲାମାନେ ଆଉ ଠକେଇଲେ ନାହିଁ । ସମସ୍ତଙ୍କ ପରି ସେମାନେ ମଧ୍ୟ ତତ୍ପର ହୋଇ ଉଠିଲେ ।

(୧୦)

''ବାପ୍‌ରେ ବାପ୍'' – କି ପ୍ରକାଣ୍ଡ ଚେହେରା ! ଗୋଟେ ଚାଳିଶି ଗଉଣିଆ ବେତାଠାରୁ ଆହୁରି ବଡ଼ । ସେଥିରେ ପୁଣି ଗୋଟିଏ ଲମ୍ବ ଧଳା ଟୋପି । ଇସ୍; କି ବିକଟାଳ ! ଅଧା ବାଉଁଶ ଲମ୍ବର ଗୋଡ଼ ଦି'ଟା କି ଭୟଙ୍କର ! !

ସେଦିନ ରାତିରେ ବେଶ୍ ମଧୁରିଆ ପବନ ବୋହୁଥାଏ । ହଷ୍ଟେଲ ବାରଣ୍ଡାରେ ସଉପ ଖଣ୍ଡେ ବିଛେଇ ଦେଇ ହରିହର ଶୋଇ ଥାଆନ୍ତି । ରାତି ଦୁଇଟା ବାଜିବାରୁ ନିଦ ଭାଙ୍ଗିଗଲା । ସେ ଉଠିବସିଲେ, ନଜର ପଡ଼ିଲା ସାମନାରେ ଥିବା ବରଗଛ ଉପରେ ।

ଆଗରୁ ସେ ମୋଟେ ଭୂତ ପ୍ରେତରେ ବିଶ୍ୱାସ କରୁ ନ ଥିଲେ । ମାତ୍ର ଏଇଟା କ'ଣ ! ଟିକିଏ ଟିକିଏ ଡର ଲାଗିଲା । ପାଖରେ ପିଲାଗୁଡ଼ାକ ଶୋଇଛନ୍ତି । ଡରିଯିବେ ନାହିଁ ତ ! ସେମାନଙ୍କ ଭିତରୁ କାହାରିକୁ ଡାକିଲେ କାଳେ ସେମାନେ ଏସବୁ ଦେଖି ପାଟି କରିବେ, ଏଣୁ କାହାରିକୁ ସେ ଡାକିଲେନି । ନିଜର ଚିତାଏ ଉଚ୍ଚ ଠେଙ୍ଗାଟି ଧରି, ହାତରେ ଗୋଟାଏ ଚୋରାବତୀ ନେଇ ସେ ବରଗଛ ଆଡ଼େ ଚାଲିଲେ ।

ଗଛ ଡାଳରେ ଯେଉଁ ଭୂତଟା ବସିଥିଲା ତା'ଆଡ଼େ ଖୁବ୍ ନିରୀକ୍ଷଣ କଲେ; କିନ୍ତୁ ସେ କିଛି କଲା ନାହିଁ । ରାତିରେ ତା' ଉପରକୁ ଯିବେ ବା କେମିତି ? ଏ ପାଖରୁ ହରିହର ଗଛର ଆରପାଖକୁ ବୁଲିଗଲେ ।

ଏଥର ଆଉ ତାଙ୍କର ବୁଝିବାକୁ ବାକୀ ରହିଲା ନାହିଁ । ସୂକ୍ଷ୍ମ ଭାବରେ ନିରୀକ୍ଷଣ କରିବାରୁ ଦେଖାଗଲା ଯେ, ବରଗଛର ଦୁଇଟା ଡାହି ଛନ୍ଦି ହୋଇଯାଇଛି । ତା'ରି ଭିତରେ ଗୋଟିଏ ମସ୍ତବଡ଼ ଫାଙ୍କ ଦେଇ ଦ୍ୱାଦଶୀର ଜହ୍ନ ଆଲୁଅ ପଡ଼ିବାରୁ ଝଲକି ଉଠୁଛି – ମନେ ହେଉଛି ସତେ ଅବା ଭୂତଟାଏ !

ପରଦିନ ସକାଳେ ସୋପାନରେ ଭୂତକଥା ଆଲୋଚନା କରାଗଲା । କିଏ କେତେ ରକମର ଭୂତ କଥା କହିଲେ । ଏସବୁ ଶୁଣି ହରିବାବୁଙ୍କର ପିଲାଦିନର ଆଉ ଏକ ଭୂତ କଥା ମନେ ପଡ଼ିଲା ।

ସେତେବେଳକୁ ସେ କଲେଜିଏଟ୍ ସ୍କୁଲରେ ମାଷ୍ଟର ଥାଆନ୍ତି । ଦିନେ ରାତିରେ ଘରକୁ ଫେରୁଥାଆନ୍ତି । ସାକ୍ଷୀଗୋପାଳ ଷ୍ଟେସନଠାରୁ ଗାଁକୁ ଆସିବା ବାଟରେ ଗୋଟାଏ ଝଙ୍କାଳିଆ ସ୍ଥାନ ପଡ଼େ । ଆବୁରୁ ଝାବୁରୁ ହୋଇ କେତେଗୁଡ଼ାଏ ଗଛ ସେଠି ଥାଏ । ସମସ୍ତେ କହନ୍ତି ସେଇଟା ଭୂତ ରହିବା ଜାଗା । ମାତ୍ର ତାକୁ ତ ଡେଇଁବାକୁ ହେବ । ନ ହେଲେ ଗାଆଁକୁ ଯିବେ କେମିତି ?

ସେ ଚାଲିଲେ । ଠିକ୍ ସେହି ସ୍ଥାନରେ ଯେମିତି ପହଞ୍ଚିଛନ୍ତି, ଏକ ଗନ୍ଧ ଆସିଲା । ତା'ପରେ ଆଗରେ ଦେଖାଦେଲା ଧଳା କ'ଣ ଗୋଟେ, ଠିକ୍ ମଣିଷ ଆକୃତିର । ଏହା ଦେଖି ହରିହର ଶଙ୍କିଗଲେ ନାହିଁ । ଛାତି ଟାଣ କରି ପାଖ ବିଲରୁ ଟେକା ଗୋଟାଇ ଆଣିଲେ । ପାଟି କଲେ । ଲୋକଟା ଘୁଞ୍ଚିଲା ନାହିଁ । ପାଖକୁ ଟେକା ଫୋପାଡ଼ିଲେ — ତାହା ଅଚଳ ରହିଲା । ଏଥର ଡର କମିଗଲା । ଆହୁରି ନିକଟକୁ ଗଲେ । ଶେଷରେ ଜଣାପଡ଼ିଲା ଭୂତ ନୁହେଁ — ସାହାଡା ଗଛଟାଏ । ପିଲାଙ୍କଠାରୁ ସବୁତକ ଭୂତକଥା ସେ ଶୁଣିଲେ । ଶେଷରେ ନିଜର ଅନୁଭୂତି ସୋପାନରେ ବର୍ଣ୍ଣନା କଲେ । ପିଲାମାନଙ୍କ ସଂଶୟ ତୁଟିଲା ଓ ସେମାନେ ନିଜକୁ 'ଭୂତ' ବୋଲି ଭାବିଲେ ।

ଆଉ ଦିନେ ଦିନେ — ସମସ୍ତେ ନିଦରେ ଶୋଇ ଥାଆନ୍ତି । ଓଳିମୂଳେ ମଚ ମଚ ଶବ୍ଦ ଶୁଭେ । କାହାରି କାହାରି ଛନକା ନିଦ ଏଇ ଆବାଜରେ ଭାଙ୍ଗିଯାଏ । କିନ୍ତୁ କ'ଣ ହେଉଛି, ବାହାରୁ କାଣ୍ଡଟା ଦେଖି ଆସିବା ଲାଗି ପିଲାଙ୍କର ଯୁ' ଅଣ୍ଟେ ନାହିଁ । ଫଳରେ ସେମାନେ ଭାବନ୍ତି- '' ଏଇଟା ନିଶ୍ଚୟ ଭୂତର ଚାଲି । ନ ହେଲେ ଏ ନିଃଶବ୍ଦ ରାତିରେ ମଚ ମଚ, ଖଟ ଖଟ କ'ଣ ଶୁଭନ୍ତା ? ସେ ଦିନ ସିନା ସାର୍ ସୋପାନରେ ଏମିତି କହୁଥିଲେ, ହେଲେ ଏଇଟା ଆଉ କ'ଣ !

ହଷ୍ଟେଲର ପରିଚାଳକ ହରିବାବୁଙ୍କୁ ଏଇ ମଚ ମଚ କଥାଟା ଅଜଣା ନ ଥାଏ । କିନ୍ତୁ ପିଲାଙ୍କୁ ଏ ବିଷୟରେ ସେ କିଛି କହନ୍ତି ନାହିଁ । ସେମାନଙ୍କ ତରଫରୁ ଏ ବିଷୟରେ କିଛି ପ୍ରଶ୍ନ ଆସିଲେ ''କିଛି ନୁହେଁ'' ବୋଲି ଭୁଲାଇ ଦିଅନ୍ତି ।

ତେବେ ଏଇଟା କ'ଣ ! ଏମ୍.ଏ. ପାସ୍ କରିଥିବା ଚାରିଟା ଲୋକ । ତା' ସାଙ୍ଗକୁ ପୁଣି ଆହୁରି ଜ୍ଞାନୀ ଲୋକ ଏଠି ଏକାଠି ହୋଇଛନ୍ତି । ଉତ୍ସାହୀ ଯୁବକ ଏମାନେ । ଇଂରେଜ ସରକାରକୁ ତଡ଼ିବାପାଇଁ ବଙ୍ଗଳା ଆଡ଼େ ଯେଉଁସବୁ ଷଡ଼ଯନ୍ତ୍ର ଚାଲିଛି, ଏମାନେ ସେହିପରି କିଛି କରୁ ନାହାନ୍ତି ତ ! ଏଇଟା ବକୁଳ ବନ ବିଦ୍ୟାଳୟ ନାଁରେ ଗୁଣ୍ଡାମୀର ଏକ ଆଡ୍ଡା ନୁହେଁ ତ ! ଏଇକଥା ଜାଣିବାଲାଗି ପୋଲିସ୍ ଆସେ ରାତିରେ । ଯୋତାର ଆବାଜ ହୁଏ । ମଚ ମଚ ଶବ୍ଦରେ ପିଲାଏ ଡରନ୍ତି । ସମସ୍ତେ ନିଘୋଡ଼ ନିଦରେ ଶୋଇଥାଆନ୍ତି, ପୋଲିସ ଫେରିଯାଏ । କିନ୍ତୁ ତା'ର ସନ୍ଦେହ ଯାଏ ନା । ହରିବାବୁ ଜାଣନ୍ତି । ଶିକ୍ଷକମାନେ ଏକଥା ବୁଝନ୍ତି । ହେଲେ ପିଲାଏ କିଛି ଟେର ପାଆନ୍ତି ନାହିଁ ।

## (୧୧)

ପକ୍ଷୀ ପିଞ୍ଜରାରେ ବେଳେବେଳେ ରହେ । କିନ୍ତୁ ଆକାଶର ନୀଳରଙ୍ଗ ଭିତରେ ପହଁରିବାକୁ ତାକୁ ଭଲଲାଗେ । ବଣବୁଦାରେ ଶାଗୁଆ ପତ୍ର ଗହଳିକୁ ସେ ଝୁରୁଥାଏ । ପିଲାଦିନଟା ଠିକ୍ ସେଇମିତି । ସବୁ ପ୍ରକାର ବନ୍ଧ, ବାଡ଼କୁ ଡେଇଁ ମଜାରେ ବୁଲିବାକୁ ପିଲା ବୟସରେ ସମସ୍ତଙ୍କୁ ଭଲଲାଗେ । କିନ୍ତୁ ଏଥିରେ ଯଦି ବାଧା ଆସେ, ତାହା ହେଲେ ମନରେ ନାନା ପ୍ରକାରର ପ୍ରତିକ୍ରିୟା ହୁଏ । ମନ ଆଉ କିଛି କରି ବସେ । ତାକୁଇ ବଡ଼ ବଡ଼ ଲୋକେ କହନ୍ତି ଦୁଷ୍ଟାମୀ ଏବଂ ଚଗଲାମୀ ।

ହରିହର ଥିଲେ ଜଣେ ଭଲ ଶିକ୍ଷକ । ପିଲାଙ୍କ ନାଡ଼ି ଚିପିବାରେ ତାଙ୍କର ନାଁ ଥିଲା । ସେମାନଙ୍କର ଏ ସବୁ ଗୁଣ ତାଙ୍କୁ ଭଲରୂପେ ଜଣାଥିଲା । ଏଣୁ ପାଠ ପଢ଼ା ସମୟ ଉପରନ୍ତୁ ଅନ୍ୟ

ସମୟଗୁଡ଼ାକ କିପରି କାମରେ ଲଗାଯାଇ ପାରିବ, ତା'ର ବ୍ୟବସ୍ଥା ସେ ବକୁଳବନର ପିଲାମାନଙ୍କ ଲାଗି କରୁଥିଲେ । ଯାହା ଫଳରେ ସତ୍ୟବାଦୀ ସ୍କୁଲର ଛାତ୍ରମାନଙ୍କର ରୀତି-ନୀତି, ଆଚାର, ବ୍ୟବହାର ଓ କର୍ମ ପଟୁତା ସବୁ କ୍ଷେତ୍ରରେ ସେମାନଙ୍କୁ ସ୍ୱତନ୍ତ୍ର ଭାବେ ଚିହ୍ନାଇ ଦେଇ ପାରୁଥିଲା ।

ପାଖରେ ଥିବା ବଡ଼ ମଣିଷଙ୍କର ପ୍ରଭାବ ପିଲାମାନଙ୍କ ଉପରେ ଯଥେଷ୍ଟ ପରିମାଣରେ ପଡ଼େ । ଛାତ୍ରମାନେ ଶିକ୍ଷକମାନଙ୍କୁ, ଘରେ ବାପା, ମା'ଙ୍କୁ ପିଲାମାନେ, ସେଥିପାଇଁ ଅନୁକରଣ କରନ୍ତି । ଅନୁସରଣ କରନ୍ତି । ସତ୍ୟବାଦୀ ସ୍କୁଲର ଶିକ୍ଷକମାନେ ପ୍ରତ୍ୟେକେ ଖାଲି ବିଦ୍ୱାନ୍ ନ ଥିଲେ । ଅଧ୍ୟୟନ କରିବାର ବଳବତ୍ତର ସ୍ପୃହା ସେମାନଙ୍କର ଥିଲା । ଜୀବନର ଲକ୍ଷ୍ୟ ସେମାନେ ବାଛି ନେଇଥିଲେ । ଫଳରେ ସେଥିରେ ପୂରାପୂରି ଲାଗିବାକୁ ବାଧ ହେଉଥିଲେ । ଶିକ୍ଷକମାନଙ୍କଠାରୁ ଛାତ୍ରମାନେ ଅଧ୍ୟୟନ କରିବାର ପ୍ରେରଣା ପାଉଥିଲେ । ଖାଲି ସେତିକି ନୁହେଁ, ବକୁଳବନର ଛାତ୍ରଙ୍କ ଆଗରେ ଶିକ୍ଷକ ଗୋଷ୍ଠୀ ସେମାନଙ୍କର ଅଧ୍ୟୟନ ଓ ଉତ୍ସାହର ଉତ୍ସ ହୋଇ ଉଠିଥିଲେ । ଏମ୍.ଏ. ପାସ୍ କରିଥିବା ଚାରିଜଣ ଶିକ୍ଷକ ସ୍କୁଲରେ ଥିଲେ । ପ୍ରତ୍ୟେକ ଗୋଟିଏ ଗୋଟିଏ ବିଷୟରେ ଧୂରନ୍ଧର । ଏଣୁ ପ୍ରଶ୍ନ ଉଠିଲା – ପ୍ରଧାନ ଶିକ୍ଷକ କିଏ ହେବେ ?

ପୂର୍ବରୁ ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ନୀଳକଣ୍ଠ । ତାଙ୍କ ପରେ ଶ୍ରୀ କୃପାସିନ୍ଧୁ ମିଶ୍ର ହେଲେ । ମାତ୍ର ଯେତେବେଳେ ଏଇ ପ୍ରଧାନ ଶିକ୍ଷକତା ପାଇଁ ଟଣାଓଟରା ଚାଲିଲା, ଗୋପବନ୍ଧୁ ବାବୁଙ୍କ ପରାମର୍ଶକ୍ରମେ ବର୍ଷଟାଏ ଲେଖାଏଁ ପ୍ରତ୍ୟେକ ଶିକ୍ଷକ ସ୍କୁଲର ଅଧକ୍ଷତା କଲେ । ଏତିକି ବେଳେ ଗୋଟାଏ ମଜାର କଥା ଉଠିଲା । ଗୋପବନ୍ଧୁ ବାବୁଙ୍କ ତଳକୁ ସମସ୍ତଙ୍କଠୁଁ ବୟସରେ ବଡ଼ ଥିଲେ ହରିହର । ସତ୍ୟବାଦୀର ପିଲାମାନେ ଶିକ୍ଷକମାନଙ୍କୁ 'ପଣ୍ଡିତେ' ଆଖ୍ୟା ଦେଇ ଡାକୁଥିଲେ । ସେହିଦିନଠୁଁ କେହି ଉପାଧି ଦେଇ ନ ଥିଲେ ବି ସତ୍ୟବାଦୀ ସ୍କୁଲର ଶିକ୍ଷକମାନଙ୍କ ନାମ ପୂର୍ବରୁ 'ପଣ୍ଡିତ' ଲେଖା ହୋଇଆସୁଛି ।

କିନ୍ତୁ ଯେତେବେଳେ ହରିହରବାବୁଙ୍କ ସମ୍ବୋଧନ କରିବା ପ୍ରଶ୍ନ ଉଠିଲା, ପିଲେ ଚିନ୍ତାରେ ପଡ଼ିଲେ । ସବୁ ଶିକ୍ଷକଙ୍କ ପରି ସେ ତ ପାଠ ପଢ଼ାଉଥିଲେ । କିନ୍ତୁ ପିଲାମାନଙ୍କ ସଙ୍ଗେ ତାଙ୍କର ସମ୍ପର୍କ ସ୍ୱତନ୍ତ୍ର ପ୍ରକାରର ଥିଲା । ମା'ଙ୍କୁ ଭଲପାଇବା ପରି ସେମାନେ ହରିହରଙ୍କୁ ଭଲ ପାଉଥିଲେ । ଏଣୁ ପଣ୍ଡିତ ଶବ୍ଦଟା ସେମାନଙ୍କ ମନକୁ ପାଇଲାନି । ସେମାନେ ତାଙ୍କୁ ଆଚାର୍ଯ୍ୟ ବୋଲି ଡାକିଲେ ।

ଦିନ, ବାର, ଠିକ୍ ମନେନାହିଁ । ମସିହାଟା ଖୋଜିଲେ ମିଳିବା କାଠିକର ପାଠ । ତଥାପି ପଚାଶ ବର୍ଷରୁ ବେଶୀ ହେବ, ଶିକ୍ଷକ ହରିବାବୁ ଏହି ଆଚାର୍ଯ୍ୟ ଶବ୍ଦର ବୋଝ ମୁଣ୍ଡେଇ ଆସୁଛନ୍ତି । ଏ'ତ ଗଞ୍ଜା ସ୍କୁଲ ପିଲାଙ୍କ ଦାନ । ବାହାରର ଲୋକମାନଙ୍କୁ ହରିବାବୁ ବଦଳରେ ଆଚାର୍ଯ୍ୟ ବାବୁ ବୋଲି ଡାକିବାଟା ଏଥର ଭଲ ଲାଗିଲା ନାହିଁ । ଶ୍ରଦ୍ଧା ଏବଂ ସମ୍ମାନ ସ୍ୱରୂପ ସେମାନେ ସେଥିରେ 'ମହାଶୟ' ଶବ୍ଦଟି ଯୋଡ଼ିଲେ । ସେହି ଦିନଠୁଁ 'ଆଚାର୍ଯ୍ୟ ମହାଶୟ' – କହିଲେ ଯେଉଁ ଛବିଟି ଆଖି ଆଗରେ ନାଚି ଉଠେ, ତାହା ସେହି ଶିକ୍ଷକ ହରିବାବୁ ଆଚାର୍ଯ୍ୟ ହରିହର ଦାସଙ୍କର – ଆଉ କାହାରି ନୁହେଁ ।

ଆଜି 'ଉପାଧି' ସମ୍ପର୍କରେ କଥା ପଡ଼ିଲେ, ଥଟ୍ଟା କରି ସେ କହନ୍ତି, ''ଆମେ ସବୁ 'ତୁ ହେଲୁ' ଉପାଧି ଧାରୀ । ଅର୍ଥାତ୍, ଲୋକେ କହିଲେ 'ତୁ ହେଲୁ' 'ତୁ ହେଲୁ' – ଆମେମାନେ ହୋଇଗଲୁଁ ।

## (୧୨)

ଚଗଲାମୀର ବିଭିନ୍ନ ପ୍ରକାର ଶ୍ରେଣୀ ଭେଦ ରହିଛି । କିନ୍ତୁ ସତ୍ୟବାଦୀ ସ୍କୁଲର ପିଲାଏ ଯେଉଁ ଚଗଲାମୀ କରନ୍ତି, ତାହା ଟିକିଏ ଭିନ୍ନ ଢଙ୍ଗର । ସେଥିରେ ଅଭଦ୍ରତା ଥାଏ ନା ।

ପିଲାମାନଙ୍କର କିପରି ସଙ୍ଗୀତ ରଚନା କରିବା, ଶ୍ଳୋକ ତିଆରୀ କରିବା ଓ ଆବୃତ୍ତି କରିବାର ଅଭ୍ୟାସ ବଢ଼ିବ, ସେଥିପାଇଁ ହଷ୍ଟେଲରେ ଗୀତାନ୍ତ ଓ ଶ୍ଳୋକାନ୍ତ କରାଯାଏ । ଦୁଇଜଣ ବା ଦୁଇଦଳ ପିଲାଙ୍କ ମଧ୍ୟରେ ପ୍ରତିଯୋଗିତା ହୁଏ । ପ୍ରତ୍ୟେକ ଶ୍ଳୋକାଂଶ ବା ଗୀତାଂଶର ଶେଷ ଭାଗରେ ଥିବା ଅକ୍ଷରକୁ ନେଇ ସେମାନେ ପରସ୍ପର ଉପରେ ଆକ୍ରମଣ କରନ୍ତି । ଫଳରେ ନୂଆ ନୂଆ ପଦ୍ୟାଂଶ ଶିଖିବା, ଶ୍ଳୋକ ଆବୃତ୍ତି କରିବା ଯୋଗୁଁ ସ୍ମରଣ ଶକ୍ତି ବଢ଼ାଇବାରେ ଏହା ସେମାନଙ୍କର ଖୁବ୍ ସହାୟକ ହୁଏ ।

ସ୍କୁଲକୁ ଲାଗି ଗୋଟିଏ ସଂସ୍କୃତ ଟୋଲ ଥାଏ । ଟୋଲରେ ପଢୁଥିବା ଦି'ଚାରି ଜଣ ପିଲା ବକୁଳ ବନର ହଷ୍ଟେଲରେ ରହୁଥାଆନ୍ତି ।

ନିୟମ ଅନୁଯାୟୀ ନିର୍ଦ୍ଦିଷ୍ଟ ସମୟରେ ଚୁପଚାପ ହୋଇ ଶୋଇପଡ଼ିବା କଥା । ସେ ଦିନ – ରାତି କେତେ ହେଲାଣି । ନୀଳକଣ୍ଠବାବୁ ବାହାରକୁ ଉଠି ଆଆନ୍ତି । ପିଲାଏ କ'ଣ କରୁଛନ୍ତି ଦେଖି ଆସିବା ପାଇଁ ହଷ୍ଟେଲ ଆଡ଼େ ଘେରଟାଏ ପକେଇଲେ । ଏଇଟା ତାଙ୍କର ଅଭ୍ୟାସ । ଗୋଟିଏ କୋଠରୀ ଆଡ଼କୁ ନଜର ଗଲା । ମିଞ୍ଜି ମିଞ୍ଜି ଆଲୁଅର ସରୁ ଧାର କବାଟ ଫାଙ୍କ ଦେଇ ପଦାକୁ ଦିଶୁଥାଏ । ଭୁଟ୍ ଭୁଟ୍ ତୁଣ୍ଡ ଶୁଭୁଥାଏ । ଏହା ଦେଖି ନୀଳକଣ୍ଠବାବୁ କାନ ପାରିଲେ । ଶୁଭିଲା, ପିଲାଏ ଶ୍ଳୋକାନ୍ତ କରୁଛନ୍ତି । ସଂସ୍କୃତ ଟୋଲର ପିଲାମାନେ ବହୁତ ଶ୍ଳୋକ ଶିଖିଥାଆନ୍ତି । ସତ୍ୟବାଦୀ ସ୍କୁଲର ପିଲାମାନେ ସେମାନଙ୍କୁ ପାରନ୍ତି ନାହିଁ । ଏଣୁ ମୁହଁ ଟାଣ କରିବାକୁ ଠକାମୀ କରନ୍ତି । ସଂସ୍କୃତ ଢଙ୍ଗର ଗୋଟିଏ ଶ୍ଳୋକ ଏତିକିବେଳେ ନୀଳକଣ୍ଠ ବାବୁଙ୍କ କାନକୁ ଆସିଲା-

''ଗର୍ଜନ୍ତି ମେଘାଃ, ବର୍ଷନ୍ତି ପାଣିଃ
ଗଡ଼ନ୍ତି ଚେଙ୍ଗାଃ ବେଳକାଳ ଜାଣି ।''

ଖାଲି ସେତିକି ନୁହେଁ । ପିଲାଙ୍କ ବାହାପିଟା ଆହୁରି ଚାଲିଥାଏ । ସେହି ବଖରାରେ ଥିବା ବିଚରା ଏକମାତ୍ର ଟୋଲ ଛାତ୍ରଟି ଧରିପାରୁ ନଥାଏ ଯେ ଶ୍ଳୋକରେ ଭୁଲ୍ କେଉଁଠି ରହିଛି । ତାହା ଛଡ଼ା ଏତେ ଗୁଡ଼ାଏ ପିଲାଙ୍କ କଥାକୁ ଭୁଲ୍ ବୋଲି କହି ଦେବାଟା କିଛି ସହଜ କଥା ନୁହେଁ । ତା'ପରେ...... ପୁଣି ଶ୍ଳୋକ ଶୁଭିଲା,

''ତନ୍ତୁଳି ସର୍ବଦା ବଙ୍କା ଚନ୍ଦ୍ର ବଙ୍କା ଦିନେ ଦିନେ ।''

– ସେଦିନ ଆହୁରି ଏମିତି ଶ୍ଳୋକ ବୋଲା ହୋଇଥିବ । ଅଶୀ ବର୍ଷ ତଳର କଥା । ମନେ ରହିଛି କେତେକେ ?

ଏ ତ ଗଲା ସତ୍ୟବାଦୀ ସ୍କୁଲର ପିଲାଙ୍କ ଚାଲାକୀ । ଏଥର ବୋକାମୀରୁ କେଇପଦ ଶୁଣିବା ।

ନୀଳକଣ୍ଠ ବାବୁଙ୍କ ନାଁ ଶୁଣିଲେ ପିଲାଏ ମରଣ ପରି ଡରନ୍ତି । କାରଣ ତାଙ୍କ ହାତଟା ବଡ଼

ଟାଣ । ଖାଲି ସେତିକି ନୁହେଁ, ସେ ଭାରି ରାଗୀ । ଦୁର୍ବାସା ପରି ଆଖିକୁ ଖୋଲିଦେଲେ, ରାଗରେ ମୁହଁ ଉପରୁ ଦି'ଟା ଝରା ଲଗା ନିଆଁହୁଳା ଖସିପଡ଼ିଲା ପରି ପିଲାଏ ମନେ କରନ୍ତି ।

ଗୋଟିଏ ଛୁଟି ଦିନର ଖରାବେଳେ । ନୀଳକଣ୍ଠବାବୁ ଆପଣା ଅଧ୍ୟୟନରେ ବ୍ୟସ୍ତ ଥାଆନ୍ତି । ପିଲାଟିଏ ଝଟ୍‌ପଟ୍ କୋଠରୀ ଭିତରକୁ ପଶି ଆସି ଡାକି ଦେଲା ''ସାର'' । ଧ୍ୟାନଟା ଖସି ଗଲା । ନଜରଟା ବହିରୁ ଯାଇ ସେ ପିଲା ଉପରେ ପଡ଼ିଲା । କାରଣଟା କ'ଣ ବୋଲି ପଣ୍ଡିତ ମହାଶୟେ ପଚାରିଲେ । ହେଲେ ପିଲାଟା ସିନା ରାଗ ମେଜାଜରେ ରାଗୀ ପଣ୍ଡିତଙ୍କ ପାଖକୁ ଦଉଡ଼ି ଆସିଥିଲା । କିନ୍ତୁ କାରଣଟା ବତାଇବାକୁ ସାହାସ ଅଣ୍ଟିଲା ନାହିଁ । ଥଙ୍ଗେଇ ଥଙ୍ଗେଇ ଚାରିଜଣ ପିଲାଙ୍କ ନାଁ ଧରି କହିଲା – ''ସେମାନେ କ'ଣ ଖେଳୁଛନ୍ତି ।'' ପଣ୍ଡିତେ ପଚାରିଲେ ''କ'ଣ ଖେଳୁଛନ୍ତି ?'' ପିଲାଟି ଆହୁରି ହେଜି କରି ଉତ୍ତର ଦେଲା ''କ'ଣ ରାଜା, ବିବି, ଗୋଲାମ ହେରିକା କରୁଛନ୍ତି ।''

ସେହି ଖେଳକୁ ସେ 'ତାଆସ ଖେଳ' କହନ୍ତି – ଏ କଥା ତୁରନ୍ତ ପିଲାଟାର ପାଟିକୁ ଆସିଲା ନାହିଁ । ଫଳରେ ''ଏତିକି କଥା କହି ପାରୁନୁ'' କହି ପଣ୍ଡିତ ମହାଶୟ କଷିକରି ଦି'ଚାପୁଡ଼ା ବଜେଇଲେ । ପିଲାଟି ଆସିଥିଲା ଚାରିଜଣଙ୍କୁ ମାଡ଼ ଖୁଆଇବ ବୋଲି । ମାତ୍ର କିଏ ଜାଣିଥିଲା ଯେ ଶେଷରେ ତା'ରି କପାଳରେ କୁଆ ଉଡ଼ିବ ?

ଆଉଦିନେ ଆଚାର୍ଯ୍ୟ ମହାଶୟ ଗୋଟିଏ ପିଲାକୁ ହେମଦସ୍ତା ପାଇଁ ପଠାଇଲେ । ପିଲାଟି ହେମଦସ୍ତାର କୁଣ୍ଡଟା ପାଇଲା ମାତ୍ର ପୁଆଟା ପାଇଲା ନାହିଁ । ଫେରି ଆସି କହିଲା, ''ଆଜ୍ଞା ହେମ ମିଳିଲା । ଦସ୍ତା ମିଳିଲା ନାହିଁ ।'' ଏହି ହେମଦସ୍ତା କଥା ପଡ଼ିଲେ ଆଜି ମଧ୍ୟ ଆଚାର୍ଯ୍ୟଙ୍କ ପାକୁଆ ପାଟିରୁ ପୁଳେ ହସ ବାହାରି ପଡ଼େ । ହେଲେ ଦାନ୍ତ ଥାଆନ୍ତା କି ! ଏ ହସ ଆହୁରି ସୁନ୍ଦର ହୁଅନ୍ତା ! !

## (୧୩)

ଆଗରୁ କୁହାଯାଇଛି ଯେ ହରିହର ଦାଢ଼ୀ ରଖିଥିଲେ । ତାଙ୍କ ଦେଖା ଦେଖି ନୀଳକଣ୍ଠବାବୁ କଲିକତାରେ ଆଇନ୍ ପଢ଼ିଲା ଦିନୁ ନିଶ ରଖିଥିଲେ । ଗୋଦାବରୀଶ ଏବଂ କୃପାସିନ୍ଧୁ ମଧ୍ୟ ଏହାର ପକ୍ଷପାତୀ ଥିଲେ । ସତ୍ୟବାଦୀ ସ୍କୁଲର ବ୍ରାହ୍ମଣ ଶିକ୍ଷକମାନଙ୍କର ଏହି ନିଶରଖା ବ୍ୟାପରଟା 'ନୀଳକଣ୍ଠ ବାବୁଙ୍କ ନିଶ ଆନ୍ଦୋଳନ' ନାମରେ ଅଭିହିତ । ଖାଲି ସେତିକି ନୁହେଁ, ପୂର୍ବରୁ ପ୍ରଚଳିତ ଥିବା ଅନେକ ବ୍ରାହ୍ମଣିଆ ପ୍ରଥାର ଅବମାନନା କରିବାରୁ ସମାଜ ଆଗରେ ଏଇ ବ୍ରାହ୍ମଣମାନଙ୍କୁ କୈଫିୟତ ଦେବାକୁ ପଡ଼ିଥିଲା । 'ମୋ ନିଶ' ବୋଲି ନୀଳକଣ୍ଠବାବୁ ଏକ ଲେଖା ଲେଖିଥିଲେ ।

ନିଶ ଆନ୍ଦୋଳନ ଫଳରେ ବହୁ ପୁରୁଣା ବନ୍ଧୁ ବାନ୍ଧବଙ୍କ ସଙ୍ଗେ ସେମାନଙ୍କର ସମ୍ପର୍କ ଛିଡ଼ି ଯାଇଥିଲା । ମନାନ୍ତର ଘଟିଥିଲା । ମାତ୍ର ଆନ୍ଦୋଳନ ବନ୍ଦ ହୋଇ ନଥିଲା ।

ଦେଶରେ ନୂଆ ଧରଣର ପିଲା ତିଆରି କରିବାକୁ ହେବ – ଏହି ଇଚ୍ଛା ନେଇ ସତ୍ୟବାଦୀ ସ୍କୁଲ ଆରମ୍ଭ କରାଯାଇଥିଲା । କାମ ମଧ୍ୟ ଚାଲୁଥିଲା । ମାତ୍ର ତା'ର ଆର୍ଥିକ ଅବସ୍ଥା ଥିଲା ଶୋଚନୀୟ । କୌଣସି ପ୍ରକାରେ ଯୋଗାଡ଼ କରି ଶିକ୍ଷକମାନଙ୍କୁ କିଛି କିଛି ଦରମା ଦିଆଯାଇ ପାରୁଥିଲା ।

ଟଙ୍କା ପଇସାର କାରବାର ଦିଗରେ ଗୋଦାବରୀଶ ବାବୁ ଥିଲେ ବଡ଼ ଢିଲା । ଏଣୁ ଘର ଚଳାଇବାରେ ତାଙ୍କର ଅସୁବିଧା ହେଉଥିଲା । ସ୍କୁଲର ମଧ୍ୟ ତାଙ୍କୁ ଆଉ ଅଧିକ ଦେଇପାରିବା ଭଳି ସମ୍ବଳ ନ ଥିଲା କି ଗୋଦାବରୀଶ ବାବୁ ନିଜେ ବେଶୀ ପଇସା ଚାହୁଁ ନ ଥିଲେ । କିନ୍ତୁ ଗୋପବନ୍ଧୁ ବାବୁତ ବଡ଼ ଚାଲାକ ଲୋକ । ଉଡ଼ନ୍ତା ଚଢ଼େଇର ଡେଣା ସେ ଗଣି ଦେବେ । ନ ହେଲେ ଚାରି ଚାରିଟା ମହାବଳ ବାଘଙ୍କୁ ସତ୍ୟବାଦୀର ପିଞ୍ଜୁରୀ ଭିତରେ ରଖିପାରନ୍ତେ କେମିତି ? ଗୋଦାବରୀଶ ବାବୁଙ୍କ ଅବସ୍ଥା ସେ ଠଉରାଇ ନେଲେ ।

ଏଣିକି ଆଉ ଗୋଦାବରୀଶ ବାବୁଙ୍କ ଘର ଚଳାଇବାକୁ ପଡ଼ିଲା ନାହିଁ । ହରିହର ସେତକର ଦାୟିତ୍ୱ ନେଲେ ।

ସତ୍ୟବାଦୀ ସ୍କୁଲକୁ ଉପରୁ ଦେଖିଲେ ଖାଲି ଗୋଟିଏ ସ୍କୁଲ ବୋଲି ଦିଶେ । କିନ୍ତୁ ଭିତରେ ଆନ୍ଦୋଳନର ନିଆଁ ଏଠି ଝରୁଥିଲା । ସେତେବେଳକୁ ଗାନ୍ଧୀଜୀଙ୍କ ନାଁ ଦେଶ ସାରା ଶୁଭିଲାଣି । ଦକ୍ଷିଣ ଆଫ୍ରିକାରେ ତାଙ୍କର ଫିନିକ୍ସ ଆଶ୍ରମ ଓ ଟଲଷ୍ଟୟ ଫାର୍ମ କଥା ଶିକ୍ଷିତ ଲୋକେ କାହିଁକି, ଗାଁ ଗଣ୍ଡାର ମଳିମୁଣ୍ଡିଆ ଲୋକେ ସୁଦ୍ଧା ଜାଣି ସାରିଲେଣି । ତା' ଛଡ଼ା ବଙ୍ଗଳାର ଆତଙ୍କବାଦୀମାନଙ୍କ କାମତ ସହଜେ ଚାଲିଥାଏ । ଏଣୁ ଏ ସବୁର ପ୍ରଭାବ ସତ୍ୟବାଦୀ ସ୍କୁଲର ଶିକ୍ଷକମାନଙ୍କ ଉପରେ ଯେ ପଡୁ ନ ଥାଏ, ତାହା ନୁହେଁ ।

ସେତେବେଳେ ଓଡ଼ିଆରେ ଯେଉଁସବୁ ଲେଖାମାନ ବାହାରୁଥାଏ, ଲୋକଙ୍କ ପକ୍ଷେ ତାହାକୁ ବୁଝିବା ବଡ଼ କଷ୍ଟକର ହେଉଥାଏ । ସେଇ ପୁରୁଣା କାଳର ସଂସ୍କୃତ ଢଙ୍ଗର ଲମ୍ବାଲମ୍ବା ଶବ୍ଦର ବେଶୀ ବ୍ୟବହାର ଯୋଗୁଁ ପଣ୍ଡିତଙ୍କ ବିନା ସାଧାରଣଙ୍କ ପକ୍ଷେ ସେ ସବୁକୁ ବୁଝିବା ବଡ଼ ମୁସ୍କିଲ ହେଉଥାଏ ।

ଏଣୁ ଗାଉଁଲୀ ସରଳ ଭାଷାରେ ଲୋକେ କିପରି ପଢ଼ିବାକୁ ପାଇବେ — ଏଇ ଚିନ୍ତା ବକୁଳ ବନର ପଣ୍ଡିତମାନଙ୍କ ମୁଣ୍ଡକୁ ଘାରିଲା । ଓଡ଼ିଶାରେ ନୂଆ କରି ଛାପାଖାନାର ପ୍ରଚାର ହେଉଥାଏ । ଖଣ୍ଡେ ଅଧେ ପତ୍ରିକା ମଧ୍ୟ ବାହାରୁଥାଏ । ସେଥିରେ ଏଠା ପଣ୍ଡିତମାନେ ବେଳେବେଳେ ଲେଖନ୍ତି । କିନ୍ତୁ ମନ ଥାଏ ନିଜର ଗୋଟିଏ ସ୍ୱତନ୍ତ୍ର ପତ୍ରିକା ପ୍ରକାଶ କରିବା ଲାଗି । ସେ କଥା ପରେ କହିବା ।

ନୀଳକଣ୍ଠ ବାବୁଙ୍କ 'କୋଣାର୍କେ' ବହିଟି ବକୁଳବନର ପିଲାଙ୍କ ସଙ୍ଗେ ନିଜର ଗୋଟିଏ ଅନୁଭୂତିର କଥା । ପଣ୍ଡିତ କୃପାସିନ୍ଧୁ କୋଣାର୍କ ଦେଉଳ ଓ ଉତ୍କଳର ଇତିହାସ ସମ୍ପର୍କରେ ବହି ଲେଖିଥିଲେ ଏଠାର ଶିକ୍ଷକ ଥିଲାବେଳେ । ଗୋଦାବରୀଶ ବାବୁଙ୍କର କବି ପ୍ରତିଭାର ପରିଚୟ ମିଳିଥିଲା ଏଇଠୁ । ଗୋପବନ୍ଧୁ ବାବୁ ତ ସମସ୍ତଙ୍କ ପାଖେ ଚିହ୍ନା ଲୋକ । ଶ୍ରଦ୍ଧାରେ, ବକୁଳବନର ଛାତ୍ରମାନଙ୍କଠାରୁ ଗାଁ ଗହଳିର ମଳିମୁଣ୍ଡିଆ ଲୋକ ପର୍ଯ୍ୟନ୍ତ, ସମସ୍ତେ ତାଙ୍କୁ ଡାକୁଥିଲେ 'ଦାସେ ଆପଣେ' ।

ଓଡ଼ିଆ ସାହିତ୍ୟରେ ଜାତୀୟତା ବୋଧକୁ ପୋଖତ କରିବାରେ ବକୁଳବନର ଏଇ ସାହିତ୍ୟିକମାନେ ବହୁତ ଉଦ୍ୟମ କରିଛନ୍ତି ।

## (୧୪)

ଆଚାର୍ଯ୍ୟ ହରିହର ନିଜକୁ କେବଳ ସତ୍ୟବାଦୀ ସ୍କୁଲର ହତା ଭିତରେ ସୀମାବଦ୍ଧ କରି ରଖି ନ ଥିଲେ । ଗାଁ ଗହଳିର ଚିନ୍ତା କରିବା ସଂଗେ ସଂଗେ ତା'ର ଦୁରବସ୍ଥାର ପ୍ରତିକାର ବ୍ୟବସ୍ଥା ପାଇଁ ମଧ ବ୍ୟାକୁଳ ହେଉଥିଲେ ।

ଅନେକଦିନରୁ ପୁରୀରେ ରଥଯାତ୍ରା ହୋଇଆସୁଛି । ନିମଠାକୁର ବଡ଼ ଠାକୁର ଖଣ୍ଡିଆ ହେଲେବି ରଥରେ ଚଢୁଛନ୍ତି । ଲୋକେ ତାଙ୍କୁ ମୁଣ୍ଡିଆ ମାରୁଛନ୍ତି । ଭାରତର କୋଣାନୁକୋଣରୁ ଲୋକେ ଆସି ଜମା ହେଉଛନ୍ତି ।

— ଏ ହେଉଛି ଅଶୀବର୍ଷ ତଳର କଥା । ସେତେବେଳେ ପୁରୀ ଆଡ଼କୁ ରେଳ ଆସିଥିଲେ ମଧ ପାଣିକଳ କିମ୍ବା ବିଜୁଳି ଆଲୁଅର ବ୍ୟବସ୍ଥା ସେଠାରେ ନଥାଏ । ରଥଯାତ୍ରାର ପନ୍ଦରଦିନ ଆଗରୁ ପୁରୀ ସହରରେ ଯାତ୍ରୀ ଭିଡ଼ ବଢ଼େ । ଏପରି କି ପ୍ରତ୍ୟେକ ଘରର ପିଣ୍ଡାମାନଙ୍କରେ ଯାତ୍ରୀମାନେ ଦୂର ଦୂରାନ୍ତରୁ ଆସି ଜମା ହୋଇଥାଆନ୍ତି । ଦି' ପଇସା ଲାଭ ପାଇବାପାଇଁ ଗୁଡ଼ିଆମାନେ ଖୋଲା ଭାବେ ଖାଇବା ଜିନିଷ ବିକନ୍ତି । କମ୍‌ଖର୍ଚ୍ଚରେ ସୁଆଦିଆ ଜିନିଷ ଖାଇବା ଲାଗି ଲୋକେ ମଧ ତାକୁ କିଣନ୍ତି । ଫଳରେ ମାଛିଙ୍କ ସଂଖ୍ୟା ବଢ଼େ । ଯେଉଁମାନେ ଖାଆନ୍ତି, ସେମାନଙ୍କର ପେଟ ଖରାପ ହୁଏ । ଥରେ ଥରେ ହଇଜା ଏପରି ପ୍ରବଳ ଆକାର ଧାରଣ କରେ ଯେ, ବାଟଘାଟରେ ମଡ଼ା ପଡ଼ିଯାଏ । ପୁରୀର ସ୍ୱର୍ଗଦ୍ୱାର ମଲାମଣିଷରେ ଭରିଉଠେ ।

ହରିହରଙ୍କୁ ଏ କଥା ବଡ଼ ବାଧେ । ପିଲାଦିନରୁ ସେ ରଥଯାତ୍ରା ଦେଖି ଆସୁଛନ୍ତି । ଜଗନ୍ନାଥଙ୍କ ରଥ ଖାଲି ନୁହେଁ, ତା'ରି ଚକ ତଳେ ଯେତେ ଲୋକ ପେଷି ହୋଇ ମରିଛନ୍ତି, ସେମାନଙ୍କ ଛବି ମଧ ତାଙ୍କ ଆଖିରେ ପଡ଼ିଛି । ମାତ୍ର ଉପାୟ କାହିଁ ? ଏକୁଟିଆ ସେ କ'ଣ କରି ପାରନ୍ତେ ? ମାତ୍ର ଏଥରକ ଆଉ ସେ ଏକା ନୁହଁନ୍ତି । ସତ୍ୟବାଦୀ ସ୍କୁଲର ଛାତ୍ରବାସରେ ଚାରିଶହ ପାଖାପାଖି ପିଲା । କେତେ ସାହସୀ, କେତେ ବୀର ଆଉ କେତେ କର୍ମଠ ସେମାନଙ୍କ ଭିତରେ ଅଛନ୍ତି । ସବୁ ପିଲାଙ୍କୁ ତ ସେ ଜାଣନ୍ତି । ଏଣୁ ସେହିମାନଙ୍କ ମଧ୍ୟରୁ ବଛା ବଛା ଦେଖି ସେ ରଥଯାତ୍ରାରେ ସେବା କରିବା ପାଇଁ ସାଙ୍ଗରେ ନେବାକୁ ଠିକ୍ କଲେ ।

ହଇଜା ରୋଗୀ । ଶୋଷରେ ତଣ୍ଟି ଶୁଖି ଯାଉଥାଏ । ବିକଳ କହିଲେ ନ ସରେ । ମାତ୍ର ପାଟିରେ ଟୋପାଏ ପାଣି ପଡ଼ିଲେ, ଆଉ ପିଇବାକୁ ଇଚ୍ଛା ହୁଏ ନା । ଥୁ' କରି ପକାଇ ଦିଏ । ସେତେବେଳେ ସେ ପାଣି ଟୋପାକ ଖାଲି ପାଣି ହୋଇ ନଥାଏ । ଷୋଳପଣ ବିଷ ପାଲଟି ଯାଇଥାଏ । ଏଇ ବିଷ କେତେବେଳେ ଛାଟି ହୋଇ ପାଟିରେ ପଡ଼େ, ପିଲାଏ ଡରନ୍ତି ନାହିଁ । କାମରେ ଲାଗନ୍ତି । ସବୁ ବର୍ଷ ସତ୍ୟବାଦୀ ସ୍କୁଲର ପିଲାଏ ରଥଯାତ୍ରାକୁ ଯାଆନ୍ତି । ରଥ ଦେଖିବା ସେମାନଙ୍କର ଅସଲ କାମ ଥାଏ ।

ସେତେବେଳକୁ ସ୍ୱଦେଶୀ ଆନ୍ଦୋଳନର ଧାସ ଉଠି ଆସୁଥାଏ । ମାତ୍ର ଦେଶରେ କୁଆଡ଼େ କ'ଣ ଘଟୁଛି, ସେସବୁ ଖବର ଗାଁ ଲୋକେ ଜାଣିବାର କିଛି ଉପାୟ ନ ଥାଏ । କାରଣ ଓଡ଼ିଶାରେ

ମୋଟେ ଖବର କାଗଜ ଥାଏ ନା । ଯେଉଁ ପତ୍ରିକା କେତୋଟି ବାହାରୁ ଥାନ୍ତି ତାହା ସାହିତ୍ୟ-ମୂଳକ । ଇଂରେଜ ସରକାରଙ୍କୁ ପଦେ କଡ଼ାକରି କହିବାର ସାହସ ସେମାନଙ୍କର ନ ଥାଏ । ଏଣୁ ଗୋପବନ୍ଧୁ ବାବୁ ଠିକ୍ କଲେ ଯେ, ସତ୍ୟବାଦୀରୁ ଏକ କାଗଜ ବାହାରିବ । ଫଳରେ ଛୋଟ ଛାପାଖାନାଟିଏ ଆସିଲା । ବହୁଦିନରୁ କାଗଜ ବାହାର କରିବାର କଥା ଗୋପବନ୍ଧୁବାବୁ ଭାବିଥିଲେ । ଏଣୁ କଟକରେ ଥିଲାବେଳେ ହରିହର କିଛି ଦିନ ମୁକୁର ପ୍ରେସ୍‌ରେ କମ୍ପୋଜ କରିବା ଶିଖିଥିଲେ ।

ସତ୍ୟବାଦୀରେ ଏଥର ପ୍ରେସ୍ ଚାଲିଲା । ପଣ୍ଡିତ ଗୋପବନ୍ଧୁଙ୍କ ସଂପାଦନାରେ କାଗଜ ବାହାରିଲା । କେତେକ ସ୍କୁଲ ପିଲା ଏଇ କାଗଜକୁ ବୁଲେଇ ବିକିବା ପାଇଁ ପୁରୀ ଆସନ୍ତି । କିଛି କିଛି କମିଶନ୍ ପଇସା ମଧ୍ୟ ସେମାନଙ୍କୁ ମିଳେ । କ୍ରମଶଃ ସେତେବେଳର ପାଠୁଆ ଲୋକ ଏଇ 'ସମାଜ' କାଗଜକୁ ଚାହିଁ ବସୁଥିଲେ । କାରଣ ପଣ୍ଡିତ ଗୋପବନ୍ଧୁଙ୍କ ଲେଖନୀରୁ ସେତେବେଳେ ଓଡ଼ିଶାର ମନ କଥାହିଁ ପ୍ରକାଶିତ ହେଉଥିଲା । ଖୁଚୁରା ଗରାକଙ୍କ ବ୍ୟତୀତ ନିୟମିତ ଗ୍ରାହକ ମଧ୍ୟ କେତେକ ହେଲେ । ସେମାନଙ୍କ ପାଖକୁ କାଗଜ ପଠେଇବା ପାଇଁ କାଗଜ ଉପରେ ଅଠା ମାରି ଠିକଣା ଲଗାଇବାରୁ ହିସାବ କରିବା ଯାଏ ସବୁକାମ ସତ୍ୟବାଦୀର ଶିକ୍ଷକ ଏବଂ ଛାତ୍ରମାନେ କରିନିଅନ୍ତି । ସେଥିଲାଗି କାହାରିକୁ ଅଧିକା ପଇସା ଦେବା ଦରକାର ପଡ଼େନା । ବରଂ ଶିକ୍ଷକମାନେ କାଗଜଟିକୁ ଚଳେଇବା ଲାଗି କିଛି କିଛି ଚାନ୍ଦା ସଂଗ୍ରହ କରନ୍ତି ।

## (୧୫)

ସେତେବେଳେ ଖୋର୍ଦ୍ଧା ହାଇସ୍କୁଲରେ ଜଣେ ବ୍ରାହ୍ମଣ ପଣ୍ଡିତ ଥିଲେ । ସେ ବଡ଼ ଆଣ୍ଡୁଆ । ସତ୍ୟବାଦୀର ଶିକ୍ଷକଗୋଷ୍ଠୀଙ୍କ ସଙ୍ଗେ କାର୍ଯ୍ୟ କ୍ଷେତ୍ରରେ ପୂରାପୂରି ଜଡ଼ିତ ନ ଥିଲେ ସୁଦ୍ଧା ସେମାନଙ୍କ ସହିତ ସେ ପରିଚିତ ଥିଲେ । ବ୍ରାହ୍ମଣ ହୋଇ ପଇତା ଛିଡ଼େଇବା, ଦାଢ଼ୀ ରଖିବା, ଜାତିପ୍ରଥା ନ ମାନିବା ଓ ଏପରି କି ବିଧର୍ମୀ ମୁସଲମାନ ଘରେ ଖାଇବା ଦ୍ୱାରା ସେ ଖୋର୍ଦ୍ଧା ସ୍କୁଲର ଶିକ୍ଷକମାନଙ୍କର ଅପ୍ରିୟ ହୋଇ ଉଠିଥିଲେ । ତାଙ୍କର ଏଇ ସବୁ ଅବାଗିଆ ଢଙ୍ଗ ଲୋକଙ୍କୁ ସୁହାଉ ନଥିଲା । ମାତ୍ର ଗୋପବନ୍ଧୁ ବାବୁ ଓରଫ ଦାସେ ଆପଣେ ତାଙ୍କୁ ଭଲ ରୂପେ ଚିହ୍ନିଥିଲେ । ତାଙ୍କ ନାଁ ଶ୍ରୀ କୃପାସିନ୍ଧୁ ହୋତା । ପିଲାଏ ଡାକନ୍ତି ପଣ୍ଡିତେ ।

ସେତେବେଳକୁ ବିଦେଶୀ ସରକାରର ଚାପା, ଲୋକେ କ୍ରମଶଃ ଅଧିକରୁ ଅଧିକ ଅନୁଭବ କଲେଣି । ପୁଣି ସେମାନଙ୍କର ଏଇ ଭାବନାକୁ ମନରେ ଜାଳିରଖିବା ପାଇଁ 'ସମାଜ' କାଗଜ ଖଣ୍ଡିକ ବେଶ୍ କାମ ଦେଉଥାଏ । ବିଶେଷତଃ ପାଠୁଆ ଲୋକଙ୍କ ମନରେ ସପ୍ତାହରେ ଥରେ ଏହା ସଳିତାରେ ତେଲ ଦେଲା ପରି ବୋଲ କରୁଥାଏ ।

ଯାହା ହେଉ, ହୋତା ମହାଶୟେ ଖୋର୍ଦ୍ଧା ସ୍କୁଲ ଛାଡ଼ିଲେ । ଦିନେ ପ୍ରାୟ ଏଗାରଟା ବେଳକୁ ସେ ବକୁଳବନ ବିଦ୍ୟାଳୟରେ ହାଜର ହେଲେ । ଯୋଗକୁ ଦାସେ ଆପଣେ ସେଦିନ ଥାଆନ୍ତି । ସ୍କୁଲରେ ରହିଲେ ସେ ଯେ କୌଣସି ଶ୍ରେଣୀର ନିଶ୍ଚୟ କେଇଟା ପିରିୟଡ଼ ନିଅନ୍ତି । ସେ ଦିନ ସେ ପିରିୟଡ଼ ନେଉଥିଲେ ଗୋଟିଏ ସୋପାନରେ । ଘଣ୍ଟି ବାଜିଲା । ଦାସେ ଆପଣେ ଆସିଲେ ।

ବାରଣ୍ଡାରେ ଦେଖିଲେ ଡେଙ୍ଗା ଲୋକଟିଏ । ନୁହେଁ ମୋଟା କି ନୁହେଁ ପତଳା । ଚିହ୍ନିବାକୁ ବାକୀ ରହିଲା ନାହିଁ । ଦେଖିଲା କ୍ଷଣି କହି ପକାଇଲେ – '' କ'ଣ ଆସିଲ ?'' କଥାରେ ଅଛି, ''କାଲ ଠାର କାଲ ମା' ଜାଣେ ।'' ସେମିତି ଦାସେ ଆପଣେଙ୍କ 'କ'ଣ ଆସିଲ' କଥାପଦକ କୃପାସିନ୍ଧୁ ବୁଝିଗଲେ । ସୁନା ପିଲାଟି ପରି ମୁଣ୍ଡ ଟୁଙ୍ଗାରି ଜବାବ ଦେଲେ ''ହଁ'' । ତା'ପରେ ସେ ଦିନ ଚାରି ପାଞ୍ଚଟା ପିରିୟଡ ପାଇଁ ସତ୍ୟବାଦୀ ସ୍କୁଲର ଶିକ୍ଷକ ନିଯୁକ୍ତ ହେଲେ । ସେ ଖୁବ୍ ଚମତ୍କାର ଭାବେ କହିପାରନ୍ତି । ଖାଲି ତାଙ୍କର ଉଚ୍ଚାରଣ ଗୁଡ଼ା ବିରାଟ ସ୍ୱରରେ ବାହାରେ ନାହିଁ । ତାଙ୍କର କହିବାର ଢଙ୍ଗଟା ମଧ ସ୍ପଷ୍ଟ । ଏଣୁ ଦାସେ ଆପଣେ ତାଙ୍କୁ, ପିଲାମାନଙ୍କୁ ପଢ଼େଇବା ଛାଡ଼ି ଗାଁ ଗହଳିକୁ 'ବେଦାନ୍ତୀ' ଅର୍ଥାତ୍ ଦନ୍ତହୀନ ବୁଢ଼ାମାନଙ୍କୁ ପଢ଼େଇବା ଲାଗି ଭାର ଦେଲେ ।

ମଧୁବାବୁଙ୍କ ନେତୃତ୍ୱରେ ଲୋକେ କିପରି ସ୍ୱଦେଶୀ ଲୁଗା ପିନ୍ଧିବେ, ବିଦେଶୀ ଜିନିଷ କିଣିବେ ନାହିଁ, ସେଥିଲାଗି ଓଡ଼ିଶାରେ ଉଦ୍ୟମ ହୋଇଥିଲା । ତା'ପରେ ପୁଣି ଗାନ୍ଧୀଜୀଙ୍କ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହୋଇଗଲା । ଗାନ୍ଧୀଜୀ 'ସ୍ୱଦେଶୀ' ସାଙ୍ଗରେ ସ୍ୱାଧୀନତା କଥାକୁ ମିଶେଇଲେ । ଏଣୁ ଏ ସବୁ କଥାକୁ ଭଲ ଭାବରେ ବୁଝେଇବା ଦରକାର । ପ୍ରଚାରକ ଅନନ୍ତ ମିଶ୍ର ଆଉ ପଣ୍ଡିତ କୃପାସିନ୍ଧୁ ହୋତା – ଏ ଦୁଇଜଣଙ୍କୁ ଦାସେ ଆପଣେ ଏ ଦାୟିତ୍ୱ ଦେଲେ ।

## (୧୬)

ଚାରିଶହ ବର୍ଷ ତଳର କଥା । ସେତେବେଳେ ଓଡ଼ିଶାର ଧର୍ମ ଏବଂ ସାହିତ୍ୟ କ୍ଷେତ୍ରରେ ଏକ ଚହଳ ପଡ଼ିଥାଏ । ଏତିକିବେଳେ ପାଞ୍ଚଜଣ ମହାପୁରୁଷଙ୍କର ଆବିର୍ଭାବ ହେଲା । ସେମାନେ ହେଲେ ଅଚ୍ୟୁତାନନ୍ଦ, ଯଶୋବନ୍ତ, ବଳରାମ, ଅନନ୍ତ ଏବଂ ଜଗନ୍ନାଥ । ଭକ୍ତି ମାର୍ଗରେ ନାନା ଶାସ୍ତ୍ର ପୁରାଣ-ଭାଗବତ, ରାମାୟଣ ଆଦି ଏହି ପାଞ୍ଚଜଣଙ୍କ ଅମଳରେ ଓଡ଼ିଆରେ ଲେଖାଗଲା । ଏଣୁ ଚିରଦିନ ପାଇଁ ଓଡ଼ିଶାର ଲୋକ ମୁହଁରେ ଏମାନେ 'ପଞ୍ଚସଖା' ଭାବେ ପରିଚିତ ରହିବେ ଓ ଏବେ ମଧ ଅଛନ୍ତି ।

ଠିକ୍ ଏହି ଘଟଣାର ପୁନରାବୃତ୍ତି ହେଲା ଆଉ ଥରେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରରୋଚନା ଆଉ ଆକର୍ଷଣୀ ଶକ୍ତି ବଳରେ ଚାରିଜଣ ତେଜୀୟାନ୍ ଯୁବକ ଦେଶ କାମରେ ବାହାରି ପଡ଼ିଲେ । ସେମାନେ ଆଉ କେହି ନୁହନ୍ତି । ଆମର ପୂର୍ବ ପରିଚିତ ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ କୃପାସିନ୍ଧୁ ମିଶ୍ର । କୃପାସିନ୍ଧୁ ମିଶ୍ର ଥିଲେ ସତ୍ୟବାଦୀର ପଞ୍ଚସଖାଙ୍କ ଭିତରେ ସମସ୍ତଙ୍କଠାରୁ ବୟସରେ ସାନ । ମାତ୍ର ସେ ହିଁ ସର୍ବପ୍ରଥମେ ସେପୁରକୁ ଗଲେ । ସମସ୍ତେ ସତ୍ୟବାଦୀ ସ୍କୁଲକୁ ମୂଳକରି ନିଜର ସେବା କାର୍ଯ୍ୟ ଚଳାଇଲେ । ଓଡ଼ିଶାର ସବୁ କ୍ଷେତ୍ରରେ ଏମାନେ ଆନ୍ଦୋଳନ କଲେ । ନିଶ ରଖିବାରେ, ପାଠ ପଢ଼ାଇବାରେ, ପିଲା ଗଢ଼ିବାରେ, ସେବା କରିବାରେ, ଇତିହାସ ଲେଖିବାରେ, ସାହିତ୍ୟ ନିର୍ମାଣରେ – ଏମିତି ସବୁ କାମରେ ଏମାନେ ଆଣିଲେ ନୂଆ ଧାରା ଏବଂ ସୂକ୍ଷ୍ମଚିନ୍ତା । ତେଣୁ ଏଇ ପାଞ୍ଚଜଣଙ୍କୁ 'ବକୁଳ ବନର ପଞ୍ଚସଖା' ବୋଲି ଲୋକେ ଡାକି ଆସୁଛନ୍ତି ।

ସତ୍ୟବାଦୀର ବକୁଳବନ ବିଦ୍ୟାଳୟରେ ଥିଲା ବେଳେ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର ପରଲୋକ ହୋଇଗଲା । ସେ ଥିଲେ 'ପଞ୍ଚସଖା'ଙ୍କ ମଧ୍ୟରେ ବୟସରେ ସାନ । କିନ୍ତୁ କାଳଚକ୍ର ଘୁରି ଗଲା । ସେ ଫେରି ପଡ଼ିଲେ ଚଞ୍ଚଳ ।

ସେତେବେଳେ ଭାରତବର୍ଷକୁ ଗାନ୍ଧୀଜୀ ଆସିଲେଣି । ଦକ୍ଷିଣ ଆଫ୍ରିକାରେ ସେ ଯେଉଁ ଆନ୍ଦୋଳନ କଲେ, ତାହା ଭାରତୀୟ ଲୋକଙ୍କ ନିକଟରେ ଭାରି ଆଦର ପାଇଲା । ଏଣୁ ସେ ଆପଣାର ଜନ୍ମମାଟିକୁ ଲେଉଟିଲେ । ଭାରତୀୟ ଜାତୀୟ କଂଗ୍ରେସ ସେ ସମୟରେ ଏକମାତ୍ର ବିରାଟ ଅନୁଷ୍ଠାନ ଥିଲା । ଦେଶ ଲୋକଙ୍କ ହାଲହକିକତ୍‌ର ପ୍ରକୃତ ଦାବୀ ତା'ରି ଜରିଆରେ ହିଁ ଇଂରେଜ ସରକାର ପାଖେ ପହଁଚୁଥିଲା । ଶ୍ରୀ ଗୋପାଳକୃଷ୍ଣ ଗୋଖେଲ ପ୍ରମୁଖ ଥିଲେ ସେତେବେଳକାର ନେତା । ଗାନ୍ଧୀଜୀ ସେମାନଙ୍କ ସଙ୍ଗେ ଯୁଟିଲେ ।

ପ୍ରତିବର୍ଷ କଂଗ୍ରେସର ଅଧିବେଶନ ବସୁଥିଲା । କଂଗ୍ରେସ ଅଧିବେଶନକୁ ଯିବା ପଣ୍ଡିତ ଗୋପବନ୍ଧୁଙ୍କର ଥିଲା ଗୋଟେ ବଡ଼ ସଉକ । ସେ ସମୟକୁ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାର ନିଖୁଣ ଛବି କଂଗ୍ରେସ ନେତାଙ୍କ ଆଗରେ ଥୋଉଥିଲେ ।

ଲାହୋର କଂଗ୍ରେସ ଅଧିବେଶନରୁ ପଣ୍ଡିତ ଗୋପବନ୍ଧୁ ଫେରି ଥାଆନ୍ତି । ଜାତୀୟ କଂଗ୍ରେସ ସେଥର ପ୍ରସ୍ତାବ କଲା 'ଇଂରେଜ ସରକାରଙ୍କ କୋର୍ଟ କଚେରୀ, ସ୍କୁଲ ଇତ୍ୟାଦିକୁ ଆମେ ବର୍ଜନ କରିବା । ବରଂ ଆମ ଦେଶରେ କଳିଆର ସମାଧାନ ହେବ ନାହିଁ, ଆମ ପିଲାଏ ମୂର୍ଖ ରହିବେ, ତଥାପି ଆଉ ବିଦେଶୀ ସରାକାରର ଗୋଲାମ ରୂପେ ଅଧିକକାଳ ରହିବା ଆମ ପକ୍ଷେ ଅନ୍ୟାୟ ହେବ ।'

ସତ୍ୟବାଦୀ ସ୍କୁଲ ଥିଲା ଗୋଟିଏ ହାଇସ୍କୁଲ । ପିଲାଏ ସେଠାରେ ଇଂରେଜ ଧାରା ଅନୁଯାୟୀ ପାଠ ପଢ଼ିଥିଲେ । ଭଲ ପଢ଼ିଥିବାରୁ ପରୀକ୍ଷାରେ ଭଲ କରୁଥିଲେ । ବକୁଳବନ ବିଦ୍ୟାଳୟର କୃତୀ ଛାତ୍ରମାନେ ପରବର୍ତ୍ତୀ କାଳରେ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ନିଜ ନିଜର ବିଶେଷତ୍ୱ ପ୍ରତିଷ୍ଠା କରିଛନ୍ତି । ଏହି ସ୍କୁଲରୁ ଶିକ୍ଷା ଲାଭ କରିଥିବା ଛାତ୍ରମାନଙ୍କ ଭିତରୁ ହରିହର ମହାପାତ୍ର ପରବର୍ତ୍ତୀ କାଳରେ ହେଲେ ପ୍ରାଦେଶିକ ଉଚ୍ଚ ନ୍ୟାୟାଳୟର ବିଚାରପତି, ଅଶୋକ ଦାସ ହେଲେ ଓଡ଼ିଶା ସରକାରଙ୍କ ମୁଖ୍ୟ ଓକିଲ, ସଦାଶିବ ମିଶ୍ର ହେଲେ ଖ୍ୟାତନାମା ଅର୍ଥନୀତିଜ୍ଞ ଓ ଶିକ୍ଷାବିତ୍, ମୋହନ ଦାସ ହେଲେ ବିଧାନସଭାର ସଦସ୍ୟ ଓ ବିଶିଷ୍ଟ ସାମ୍ୟବାଦୀ, ଲକ୍ଷ୍ମଣ ମିଶ୍ର ପୋଲିସ ଅଫିସର ହୋଇଥିଲେ ବି ପରବର୍ତ୍ତୀ କାଳରେ ବିଶିଷ୍ଟ ଆୟୁର୍ବେଦ ଶାସ୍ତ୍ରୀ ଭାବରେ ପରିଚିତ ହେଲେ । ଏଣୁ ସ୍କୁଲକୁ ଜାତୀୟ ସ୍କୁଲରେ ପରିଣତ କରିବା କଥା ଦାସେ ଆପଣେ ଅନେକଦିନୁ ଭାବୁଥିଲେ । ଥରେ ଅଧେ ବନ୍ଧୁମାନଙ୍କ ସଙ୍ଗେ ଚର୍ଚ୍ଚା ମଧ୍ୟ ହୋଇଥିଲା । ଯୋଗକୁ ୧୯୨୦ ମସିହାରେ କଂଗ୍ରେସ ଅଧିବେଶନ ସେଇଆ ଠିକ୍ କଲା ।

ସ୍ୱାଧୀନତାର ନିଆଁ ଜଳାଇବା ପାଇଁ ବହୁତ ତେଜୀୟାନ୍ ଯୁବକ ଦରକାର — ସ୍ୱାର୍ଥହୀନ ସେବକ ଲୋଡ଼ା । ସେମିତି କେତେଗୁଡ଼ିଏ ଲୋକଙ୍କୁ ଗୋପବନ୍ଧୁବାବୁ ବାଛିଥିଲେ । ବକୁଳବନର ବିଦ୍ୟାପୀଠରେ ସେମାନେ ଶିକ୍ଷକଥିଲେ, କିନ୍ତୁ ପ୍ରକୃତରେ ତାହା ଥିଲା ସେମାନଙ୍କ ଲାଗି ଅସଲ ତାଲିମ କ୍ଷେତ୍ର ।

ଏ ଥରକ ପ୍ରକୃତ କାର୍ଯ୍ୟ ପହଞ୍ଚିଗଲା । ସେମାନଙ୍କୁ ପଦାକୁ ବାହାର କରିବାକୁ ହେବ । ଆଉ ସ୍କୁଲକୁ ଜଗି ବସିରହିଲେ ଚଳିବ ନାହିଁ । ବକୁଳବନକୁ ଜାତୀୟ ସ୍କୁଲରେ ପରିଣତ କରିବାକୁ ହେବ । ନଚେତ୍ ସ୍କୁଲକୁ ଛାଡ଼ିଦେବାକୁ ପଡ଼ିବ । ଶେଷରେ ସତ୍ୟବାଦୀ ହାଇସ୍କୁଲକୁ ଜାତୀୟ ସ୍କୁଲରେ ପରିଣତ କରାଗଲା । ହାଇସ୍କୁଲ ଏବଂ କଲେଜର ଏକ ମିଶାମିଶି ପାଠ୍ୟକ୍ରମ ପ୍ରଚଳନ କରାଯାଇ କେତେକ ଅଦରକାରୀ ବିଷୟକୁ ବାଦ୍ ଦିଆଗଲା । ପିଲାଏ ନୂଆ ବିଷୟ ଜାଣିବାକୁ ପାଇଲେ ।

ପୂର୍ବରୁ ଲିଙ୍ଗରାଜ ବାବୁ ବକୁଳବନରେ ପୂରା ସମୟ ଦେବାପାଇଁ ବ୍ୟାକୁଳ ହେଉଥିଲେ । କିନ୍ତୁ କେତେକ କାରଣ ଯୋଗୁଁ ଦାସେ ଆପଣେଙ୍କ ପରାମର୍ଶ କ୍ରମେ ସେ ବିହାର ସରକାରଙ୍କ ସଂସ୍କୃତ ଶିକ୍ଷା ପରିଦର୍ଶନ କାର୍ଯ୍ୟରେ ନିଯୁକ୍ତ ଥିଲେ । ମାତ୍ର ୧୯୨୧ରେ ଅସହଯୋଗ ଆନ୍ଦୋଳନ ଆସିଲା । ଦେଶସାରା ସରାକାରୀ କୋର୍ଟ, କଚେରୀ ଓ ସ୍କୁଲକୁ ବର୍ଜନ କରାଗଲା । ପରିଣତିରେ ଅଗଣିତ ନରକାରୀ ଜେଲ ଗଲେ । ଏତେବେଳେ ଲିଙ୍ଗରାଜବାବୁ ଚାକିରୀକୁ ଜଗି ବସି ରହି ପାରନ୍ତେ କିପରି ? ସେ ସରକାରୀ ଚାକିରୀରୁ ଇସ୍ତଫା ଦେଲେ । ପୂର୍ବରୁ ସିନା ଅବସର ସମୟରେ ବକୁଳବନକୁ ଆସୁଥିଲେ । ଏଥର ପୂରାପୂରି ରହିଲେ । ଆଉଜଣେ ଏମ୍.ଏ. ପାସ୍ କରିଥିବା ଯୁବକ ଆସି ଯୁଟିଲେ । ତାଙ୍କ ନାମ ଶ୍ରୀ ନନ୍ଦ କିଶୋର ଦାସ । ନନ୍ଦବାବୁଙ୍କ ଭଗ୍ନୀପତି କୈଳାସ ଚନ୍ଦ୍ର ଦାସ ଓ ହରିହର ଥିଲେ ସହପାଠୀ । ଏଣୁ ତାଙ୍କ ସାଙ୍ଗରେ ପରିଚୟ ହେଲାଦିନୁ ସେ ହରିହରଙ୍କୁ ''ହରିଭାଇନା'' ବୋଲି ଡାକି ଆସିଛନ୍ତି ।

## (୧୭)

ଉଣେଇଶହ ଏକୋଇଶି ମସିହାଟି ଭାରତର ଜାତୀୟ ଆନ୍ଦୋଳନରେ ସବୁଦିନ ପାଇଁ ମନେ ରହିବ । ସମଗ୍ର ଭାରତବର୍ଷର ପ୍ରତ୍ୟେକଟି କୋଣରେ ଲୋକମାନେ ଆପଣା ମାତୃଭୂମିକୁ ସ୍ୱାଧୀନ କରିବାପାଇଁ ପଣକଲେ । ଦେଶ ସାରା ଅସହଯୋଗର କାର୍ଯ୍ୟକ୍ରମ ଚାଲିଲା । ଗୋରା ସରକାରକୁ ସାହାଯ୍ୟ ନକରିବା ଲାଗି କଲଲୁଗା ପିନ୍ଧିବା ନାହିଁ, ସରକାରୀ କୋର୍ଟ କଚେରୀ ତ୍ୟାଗ କରିବା, ସ୍କୁଲରେ ପଢ଼ିବା ନାହିଁ- ହେଲା ସେତେବେଳକାର ମନ୍ତ୍ର । ଦାସେ ଆପଣେଙ୍କ ଭଳି ନେତାମାନେ ଏହି ଧ୍ୱନି ଉଠାଇଥିଲେ । ଆଉ ମାନେ ଏଥିରେ ତାଳ ଦେଲେ । ଦେଶ ସାରା ଆନ୍ଦୋଳନ ଚାଲିଲା ।

ପୂର୍ବରୁ ସତ୍ୟବାଦୀ ସ୍କୁଲର ପାଠ୍ୟକ୍ରମ ପ୍ରଚଳିତ ସ୍କୁଲମାନଙ୍କ ପରି ଥିଲା । ପିଲାମାନେ ପରୀକ୍ଷା ଦେଇ ଅନ୍ୟ ସମସ୍ତଙ୍କ ଭଳି ପାସ୍ କରୁଥିଲେ । ମାତ୍ର ଏଥରକ ଜାତୀୟ କଂଗ୍ରେସଙ୍କର ସିଦ୍ଧାନ୍ତ ଅନୁଯାୟୀ ତାହା ବନ୍ଦ କରାଯିବା ଠିକ୍ ହେଲା । ସରକାର ସହିତ ସବୁ ପ୍ରକାର ସମ୍ବନ୍ଧ ବନ୍ଦ ହେଲା । ୧୯୨୧ରୁ ୧୦୨୬ ପର୍ଯ୍ୟନ୍ତ ଜାତୀୟ ବିଦ୍ୟାଳୟ ଚାଲିଲା ।

ହଁ, ଏଇ ସମୟରେ ସତ୍ୟବାଦୀ ସ୍କୁଲର ଜୀବନକାଳ ଭିତରେ ବହୁ ପରିବର୍ତ୍ତନ ଘଟି ଯାଇଥିଲା । ଅନ୍ତତଃ ଶେଷ ଆଡ଼କୁ ସେତକ କହିଦେବା ଉଚିତ୍ ହେବ । ପଣ୍ଡିତ ଗୋଦାବରୀଶଙ୍କର ଇଚ୍ଛାଥିଲା – ଆପଣା ଗାଁ ବାଣପୁରଠାରେ ଏକ ହାଇସ୍କୁଲ ପ୍ରତିଷ୍ଠା କରିବା । ଏଣୁ ସତ୍ୟବାଦୀ ସ୍କୁଲ ପ୍ରତି ଯେଉଁ ମମତା ତାଙ୍କର ଥିଲା, ସେଥିରୁ ଅନେକଟା ବାଣପୁରକୁ ଟାଣି ହୋଇଗଲା । ପୁଣି

ସେତେବେଳେ ଓଡ଼ିଶା ବୋଲି ଖଣ୍ଡିଏ ଅଲଗା ପ୍ରଦେଶ ନଥିବାରୁ ସମୁଦାୟ ଓଡ଼ିଆ ଭାଷାଭାଷୀ ଲୋକଙ୍କୁ ଏକାଠି କରିବାପାଇଁ ମଧୁବାବୁଙ୍କ ଯୁବକ ବୟସରୁ ଯେଉଁ ଆନ୍ଦୋଳନ ଚଳି ଆସୁଥିଲା, ସେ ତା'ର ଭାର ନେଲେ । ଚକ୍ରଧରପୁରଠାରେ ଗୋଦାବରୀଶଙ୍କ ନେତୃତ୍ୱରେ ଓଡ଼ିଆ ଆନ୍ଦୋଳନ ଚାଲିଲା । ଏଣୁ ୧୯୨୧ରେ ଗୋଦାବରୀଶ ବାବୁ ବକୁଳବନ ଭିତରେ ନ ଥିଲେ ।

ସତ୍ୟବାଦୀ ସ୍କୁଲର ଶିକ୍ଷକ ଥିଲାବେଳେ ହଠାତ୍ ନୀଳକଣ୍ଠ ବାବୁ କଲିକତା ବିଶ୍ୱବିଦ୍ୟାଳୟରେ ଦର୍ଶନ ଅଧ୍ୟାପକ ରୂପେ ନିଯୁକ୍ତ ପାଇଲେ । ଦାସେ ଆପଣେଙ୍କ ଅନୁମତିକ୍ରମେ ସେଥିରେ ସେ ଯୋଗ ଦେଲେ । ଏଣୁ ୧୯୨୧ର ଆନ୍ଦୋଳନ ଆରମ୍ଭ ବେଳକୁ ସେ ମଧ୍ୟ ଅନୁପସ୍ଥିତ ।

ଆଚାର୍ଯ୍ୟ ହରିହର ଆଉ କୁଆଡ଼େ ଯାଆନ୍ତେ ? ଜାତୀୟ ବିଦ୍ୟାଳୟର ଅଧ୍ୟାପକ ହୋଇ ସେ ରହିଲେ ।

ଜାତୀୟ ବିଦ୍ୟାଳୟଟିକୁ ସରକାରଙ୍କ ସ୍ୱୀକୃତି ମିଳିଲା ନାହିଁ । ଫଳରେ ଏଠାରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନେ କଲେଜରେ ପଢ଼ି ପାରିବେ ନାହିଁ କି ସେମାନଙ୍କର ପାସ୍ କରିବାଟାକୁ ସରକାରୀ ମହଲରେ କେହି ସ୍ୱୀକାର କରିବେ ନାହିଁ । ପିଲାଙ୍କ ଭିତରେ ଭାଳେଣି ପଡ଼ିଲା

ସବୁ ପିଲାଏ ତ ଆଉ ବିପ୍ଲବୀ ନଥିଲେ । ପାଠ ପଢ଼ି ଚାକିରୀ କରିବା ହିଁ ଥିଲା ବହୁଛାତ୍ରଙ୍କର ଉଦ୍ଦେଶ୍ୟ । ଏଣୁ ଆଗକୁ ଚାକିରୀ ବାକିରୀ କରିବାର ସୁଯୋଗ ନଦେଖି ଗୋଟିକ ପରେ ଗୋଟିଏ ଇସ୍କୁଲ ଛାଡ଼ିଲେ । ଶେଷରେ ଚାରିବର୍ଷ ପରେ ଇସ୍କୁଲ ଭାଙ୍ଗିଗଲା । ଆଚାର୍ଯ୍ୟ ହରିହର ସତ୍ୟବାଦୀରୁ ଏଥର ଉଠିଲେ ।

## (୧୮)

ଦାସେ ଆପଣେ କେବେ ଚୁପଚାପ ବସିବା ଲୋକ ନୁହଁନ୍ତି । କିଛି ନା କିଛି ଗୋଟେ କାମ ସେ କେଉଁଠୁ ହେଲେ ବାହାର କରିବେ । ସତ୍ୟବାଦୀ ସ୍କୁଲ ତ ଭାଙ୍ଗିଗଲା । ଏଣିକି କ'ଣ କରାଯାଇ ପାରେ – ବିଚାର ପଡ଼ିଲା । ସେ ପରାମର୍ଶ ଦେଲେ ପୁରୀଠାରେ ଏକ ବିଧବାଶ୍ରମ ଖୋଲାଯିବ । ସେତେବେଳେ ୫/୭ ବର୍ଷର ଝିଅକୁ ସମବୟସ୍କ ପୁଅ ପିଲା ସହିତ ବାହା କରିଦେବାର ବ୍ୟବସ୍ଥା ରହିଥିଲା । ହଇଜା, ବସନ୍ତ, ମେଲେରିଆ ପରି ନାନା ରକମର ରୋଗରେ ପଡ଼ି ପିଲାମାନେ ବି କମ୍ ସଂଖ୍ୟାରେ ମୃତ୍ୟୁ ମୁଖରେ ପଡୁ ନଥିଲେ । ଅପ୍ରାପ୍ତ ବୟସ୍କା ଛୋଟ ଝିଅ ଶାଶୁଘର କ'ଣ ବୋଲି ଜାଣିବା ଆଗରୁ ବହୁ କ୍ଷେତ୍ରରେ ବିଧବା ହୋଇଯାଉଥିଲେ । ସେତେବେଳେ ସାମାଜିକ କ୍ଷେତ୍ରରେ ବିଧବାମାନଙ୍କ ଲାଗି ନାନାରକମର କଟକଣା ଓ ଅପମାନ । ବୈବାହିକ ଜୀବନ କ'ଣ ବୋଲି ଜାଣି ନଥିଲେ ବି ବିଧବା ଝିଅର ପୁଣି ଥରେ ବହା ହେବାର ପ୍ରଶ୍ନ ଉଠୁ ନ ଥିଲା । ସ୍ୱାମୀର ମୃତ୍ୟୁ ପାଇଁ ଝିଅର ଦୁର୍ଭାଗ୍ୟକୁ ଦାୟୀ କରାଯାଉଥିଲା । ଭାଗ୍ୟକୁ ଆଦରି ସବୁଦିନ ପାଇଁ ଅନ୍ୟମାନଙ୍କ ପାଖରୁ ନିଜର 'ଦୁର୍ଭାଗ୍ୟ' ଲାଗି ଗାଳି ମନ୍ଦ ଖାଇ ବଞ୍ଚି ରହିବା ହିଁ ଥିଲା ତା'ର ଧର୍ମ । ସେଥିପାଇଁ ସେ ସମୟର ସମାଜ ସଂସ୍କାରକମାନେ ବିଧବା ବିବାହ ପ୍ରଥାର ସପକ୍ଷରେ ଥିଲେ ।

ରକ୍ଷଣଶୀଳ ଶାସନୀ ପରିବାରରୁ ଆସିଥିବା ଗୋପବନ୍ଧୁ ଓ ହରିହର ବିଧବା ବିବାହ ସପକ୍ଷରେ ଥିଲେ । ମାତ୍ର ସେତେବେଳର ଅବସ୍ଥା ଯାହା ସେଥିରେ ବିଧବା-ବିବାହ କଥା କହିବା ସେମାନଙ୍କ ପକ୍ଷରେ ସହଜ ନଥିଲା । ବିଶେଷତଃ ପୁରୀରେ ଅନ୍ତତଃ କେତେଜଣ ବିଧବା ଝିଅଙ୍କୁ ସେମାନଙ୍କର ଦୁରବସ୍ଥାରୁ ଉଦ୍ଧାର କରାଯିବା ଉଚିତ୍ — ଏଇଆ ଭାବି ପୁରୀ ସହରରେ ଏକ ବିଧବାଶ୍ରମ ଆରମ୍ଭ କରାଗଲା ।

ତାହାହିଁ ହେଲା । ପାଞ୍ଚ ସାତ ଜଣ ବିଧବାଙ୍କୁ ଘେନି ପୁରୀର ସ୍ୱର୍ଗତ ଡାକ୍ତର ବାଳକୃଷ୍ଣ ମିଶ୍ରଙ୍କ ଘରେ ଏ ଆଶ୍ରମଟିକୁ ଚାଲୁ କରାଗଲା । ଆଚାର୍ଯ୍ୟ ମହାଶୟ ଶିକ୍ଷାର୍ଥୀନୀମାନଙ୍କର ଦାୟିତ୍ୱ ନେଲେ । ସେମାନଙ୍କର ପଢ଼ାପଢ଼ି, କାମ ଦାମ, ମାନସିକ ଉନ୍ନତି ଆଦିର ଦେଖା ଶୁଣା କଲେ । ସେତେବେଳେ ବିଧବାମାନଙ୍କ ପ୍ରତି କି କଠୋର ସାମାଜିକ କଟକଣା !

ସେଥିରେ ପୁଣି ଯେଉଁମାନେ ଶିଶୁ ଅବସ୍ଥାରେ ବିଭାହୋଇ ସ୍ୱାମୀଙ୍କୁ ହରାଇ ଥାଆନ୍ତି, ସେମାନଙ୍କ ଦୁଃଖ ତ କହିଲେ ନସରେ । ହୀରାଠାରୁ ଜୀରାଯାଏ ସବୁକାମରେ ଆକଟ । ପୁଣି ସେମାନଙ୍କୁ ପଦାକୁ ଆଣିବା ଆଜିପରି ଏତେ ସହଜ ବ୍ୟାପାର ନୁହେଁ !

ଗୋଦାବରୀଶ ବାବୁ ଚକ୍ରଧରପୁରଠାରେ ଓଡ଼ିଆ ଆନ୍ଦୋଳନ ଚଳେଇଥାନ୍ତି । ୧୯୨୧ରେ ପଣ୍ଡିତ ନୀଳକଣ୍ଠ ଚାକିରୀ ଛାଡ଼ିଲେ । ସେ ଆସିଲେ ସମ୍ବଲପୁର । ଓଡ଼ିଆ ଆନ୍ଦୋଳନକୁ ସେଠାରେ ନେତୃତ୍ୱ ଦେଲେ । ଲିଙ୍ଗରାଜ ମିଶ୍ର ଯାଇଥାନ୍ତି ବିହାରର ମୁଜାଫରପୁର ।

ମାତ୍ର ନିଜେ ଗୋପବନ୍ଧୁ ବାବୁ କୁଆଡ଼େ ଗଲେ ନାହିଁ । ସମାଜ କାଗଜ ଲାଗି ସତ୍ୟବାଦୀରେ ରହିଲେ । ତା'ଛଡ଼ା ଗାଁର ଯୁବକମାନଙ୍କୁ ଏକତ୍ର କରି ସେମାନଙ୍କଠାରୁ କାମ ଉଠାଇବାର ଉଦ୍ୟମ କଲେ । ସାକ୍ଷୀଗୋପାଳର ଆଖପାଖ ଲୋକେ ଏବେ ବି କହିପାରିବେ — ସେତେବେଳେ କିପରି ସେ ଅଞ୍ଚଳର ଗାଉଁଲୀ ଯୁବକମାନେ ଗ୍ରାମ ସଫେଇ, ଅସ୍ପୃଶ୍ୟତା ନିବାରଣ ଆଉ ନିଶା ନିବାରଣ ଆଦିର କାମ କରୁଥିଲେ ।

କମ୍ପୋଜିଟର ଅଭାବରୁ ସମାଜ ପ୍ରେସ ସତ୍ୟବାଦୀରୁ ପୁରୀ ଉଠି ଯାଇଥାଏ । ସମାଜ ପ୍ରକାଶ ପାଉଥାଏ ପୁରୀରେ । ତାହାର ସଂପାଦକ ଥାଆନ୍ତି ଗୋପବନ୍ଧୁ ଦାସ । ପଣ୍ଡିତ ଗୋପବନ୍ଧୁ ସେତେବେଳେ ଓଡ଼ିଶାର ମୁକୁଟହୀନ ସମ୍ରାଟ କହିଲେ ଚଳେ । ଦେଶପ୍ରାଣ ମଧୁବାବୁ ହୁଏତ ସେତେବେଳେ ବଞ୍ଚିଥିଲେ । ମାତ୍ର ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ବହୁତ ବ୍ୟାପକ ହୋଇଯାଇଥିଲା ।

ମଧୁସୂଦନ ଦାସ ଭାରତବର୍ଷର ସ୍ୱାଧୀନତା କଥାଟାକୁ ଠିକ୍ ଭାବରେ ଅଟକଳ କରି ପାରି ନ ଥାନ୍ତି କି ସ୍ୱାଧୀନତା ସମ୍ପର୍କରେ ତାଙ୍କର କିଛି ଝୁଙ୍କ ନ ଥାଏ । ଦେଶସାରା ସରକାରୀ ପଦ ପଦବୀ ବର୍ଜନ ପାଇଁ ଆହ୍ୱାନ ଦିଆଯାଉଥିବା ବେଳେ ସେ ବିହାର ଓଡ଼ିଶା ସରକାରଙ୍କ ମନ୍ତ୍ରୀ ହୋଇଥିବାରୁ ସେଥିପାଇଁ କଟକ ସହରରେ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ହରେକୃଷ୍ଣ ମହତାବ ପ୍ରମୁଖ ଦଳେ ଛାତ୍ର ମଧୁସୂଦନ ଦାସଙ୍କର ଏକ ଛଣରେ ତିଆରି ପ୍ରତିମୂର୍ତ୍ତିକୁ ପୋଡ଼ିଥିଲେ । କାଠଯୋଡ଼ି ବାଲିରେ ଏକ ସାଧାରଣ ସଭାରେ ଏହା କରାଯାଇଥିଲା । ସ୍ୱାଧୀନତା ଆନ୍ଦୋଳନର ମାର୍ଗଦର୍ଶକ, ଓଡ଼ିଆ ଆନ୍ଦୋଳନର ନେତା, ଖଦୀ ଏବଂ ସମବାୟର ପ୍ରଚାର ଦିଗରେ ଉଦ୍ୟମୀ କର୍ମୀ ହେବା

ସାଙ୍ଗକୁ ଓଡ଼ିଶାର ଜନମତକୁ ଠିକ୍‌ଭାବେ ଚଳାଇବା ଲାଗି ସମାଜ କାଗଜର ସଂପାଦକ ସେ ଥିଲେ ।

ସେତେବେଳକୁ ବ୍ରହ୍ମପୁରଠାରେ ଶ୍ରୀଯୁକ୍ତ ଶଶୀଭୂଷଣ ରଥଙ୍କ ସଂପାଦନାରେ ଆଉ ଖଣ୍ଡେ କାଗଜ ବାହାରୁଥାଏ । ତା' ନାଁ ହେଉଛି 'ଆଶା' । ଅନେକ କହନ୍ତି – ନିଜେ ଦାସେ ଆପଣେ ଆଶାର ସଂପାଦକୀୟ ମଧ୍ୟ ଲେଖୁଥିଲେ ।

ମୋଗଲବନ୍ଦୀ ଅଞ୍ଚଳରେ ଥିବା ବାଲେଶ୍ୱର ଏବଂ କଟକ ଏ ଉଭୟ ଜିଲାର ମଝି କନିକା ଏକ ଜମିଦାରୀ । ସେଠାକାର ଜମିଦାର ପ୍ରଜାମାନଙ୍କ ଉପରେ ଭୟଙ୍କର ଅତ୍ୟାଚାର କରୁଥିଲେ । ଏଣୁ ଯୁଗ ଯୁଗ ଧରି 'ନଅଙ୍କ ଦୁର୍ଭିକ୍ଷ' ପରି କନିକା ଅତ୍ୟାଚାର ଓଡ଼ିଶା ଇତିହାସରେ ଏକ କଳଙ୍କ । ଜମିଦାରଙ୍କ ନାଲି ଆଖି ତଳୁ ସେଠାକାର ସଠିକ ଖବର ପାଇବା କଷ୍ଟକର ବ୍ୟାପାର । ତଥାପି କନିକା ସମ୍ବନ୍ଧରେ କେତେକ ସତ୍ୟ ଖବର ଦାସେ ଆପଣେଙ୍କ ନାମରେ ମାନହାନୀ ମୋକଦ୍ଦମା କଲେ । କନିକାରୁ ଠିକ୍ ଠିକ୍ କଥାର ସାକ୍ଷ୍ୟ ଦେବା ପାଇଁ ଲୋକ ସଂଗ୍ରହ କରିବା ଦରକାର । ଏଣୁ ଆଚାର୍ଯ୍ୟ ହରିହର କନିକାରେ ବୁଲୁ ଥିଲେ । ଲୋକଙ୍କଠାରୁ ଚାକ୍ଷୁସ ପ୍ରମାଣ ଓ ତଥ୍ୟ ସଂଗ୍ରହ କରୁଥିଲେ, ଶେଷରେ ମୋକଦ୍ଦମା ଚାଲିଲା । ଦାସେ ଆପଣେ ଦୋଷୀ ସାବସ୍ତ୍ୟ ହେଲେ । ମାସକ ଲାଗି ସେ ଜେଲ ଗଲେ । ୧୯୨୧ରୁ ୧୯୨୪ ପର୍ଯ୍ୟନ୍ତ ସ୍ୱରାଜ୍ୟ ଆନ୍ଦୋଳନରେ ପୁଣି ତାଙ୍କୁ ଜେଲ ଯିବାକୁ ହେଲା । ଏଥର ଆଚାର୍ଯ୍ୟ ହରିହର ପୁରୀଠାରେ ରହିଥିଲେ । ସେ ତ ଆଉ ଖାଲି ବସି ପାରନ୍ତେ ନାହିଁ । ଏଣୁ କିଛି ନା କିଛି ସେବା କାର୍ଯ୍ୟ ଚାଲିଥାଏ । କିନ୍ତୁ ପୁରୀ ହିଁ ହେଲା ତାଙ୍କର ଏଥରକର ରହିବା ସ୍ଥାନ ।

## (୧୯)

ଗୋଟିଏ ପଟେ ସରକାରଙ୍କ ବିରୁଦ୍ଧରେ ଲୋକେ ଯେମିତି ଜୋର ସୋରରେ ବିରୋଧ ଚଳେଇ ଥାଆନ୍ତି, ଅନ୍ୟ ପଟେ ଠିକ୍ ସେମିତି ସରକାରଙ୍କୁ ସମର୍ଥନ କରୁଥିବା ଲୋକ ମଧ୍ୟ ଥାଆନ୍ତି । ଉଭୟ ପକ୍ଷଙ୍କ ମଧ୍ୟରେ ଏତିକି ବେଳେ ଭୀଷଣ ଟଣା ଓଟରା ଚାଲିଥାଏ । ସରକାରଙ୍କ ତରଫରୁ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସମ୍ମାନ ଦେବା ପାଇଁ ଏକ ଉପାଧି ପ୍ରଦାନ ଉତ୍ସବର ଆୟୋଜନ କରାଗଲା । ଗୋଟିଏ ପଟେ ବହୁତ ଲୋକ ଏହାର ତୀବ୍ର ନିନ୍ଦାବାଦ କଲେ, ଅନ୍ୟପଟେ ଅନେକଙ୍କର ସମର୍ଥନ ମଧ୍ୟ ଏଥିପ୍ରତି ମିଳିଲା ।

ପୁରୀର ଏମାର ମଠର ମହନ୍ତ ମହାଶୟ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି । ସରକାରଙ୍କ ତରଫରୁ ତାଙ୍କୁ ଉପାଧି ତ ମିଳିଲାନି, ମିଳିଲା ଗୋଟିଏ ସ୍ୱର୍ଣ୍ଣ ପଦକ । ବାବାଜୀ ଲୋକଙ୍କର ଉପାଧି କ'ଣ ଦରକାର ? ଦାସେ ଆପଣେ ଯେମିତି କଥାରେ ହସେଇ ପାରନ୍ତି, ସେମିତି କନ୍ଦେଇ ମଧ୍ୟ ପାରନ୍ତି । ତାଙ୍କ କଲମ ମୁନରେ ସବୁକିଛି ଥାଏ । ପାଟିର କଥା ଏବଂ ହାତର କଲମ – ଉଭୟ ତାଙ୍କର ହୃଦୟର ସୂଚନା ଦିଏ । ଏମାର ମଠ ମହନ୍ତଙ୍କ ପଦକ ପାଇବାକୁ ଲକ୍ଷ୍ୟ କରି ସେ ସମାଜ କାଗଜରେ ଲେଖିଥିଲେ – 'ଇଂରେଜ ସରକାର ଅତ୍ୟନ୍ତ ଗୁଣଗ୍ରାହୀ । ଏମାର ମଠ ମହନ୍ତଙ୍କ ଗୁଣ ସେ ଜାଣନ୍ତି । ମହନ୍ତ ମହାଶୟେ ସନ୍ନ୍ୟାସୀ ଲୋକ । ଏଣୁ ମାଳା ଗଡ଼ାନ୍ତି । ଇଂରେଜ ସରକାର ଯେଉଁ ସ୍ୱର୍ଣ୍ଣ ପଦକଟି

ତାଙ୍କୁ ଦେଇଛନ୍ତି, ସେଇଟିକୁ ସେ ଏଥର ନିଜ ରୁଦ୍ରାକ୍ଷ ମାଳା ଭିତରେ ତ୍ରିସଂଧ୍ୟାରେ ଗଡ଼ାଇ ପାରିବେ ।'

ସେ ଦିନ ଆଚାର୍ଯ୍ୟ ମହାଶୟ ତରତର ଥାଆନ୍ତି । ପୁରୀ କଚେରୀ ପାଖରେ ଜଣେ ବନ୍ଧୁ ପଚାରିଲେ – ''ଆଜ୍ଞା, କୁଆଡ଼େ ଯିବେ କି ?'' ଆଚାର୍ଯ୍ୟେ ଉତ୍ତର ଦେଲେ – ''ଏମାର ମଠ ମହନ୍ତ ମହାଶୟଙ୍କ ପାଖକୁ, ବିଧବାଶ୍ରମ ଲାଗି କିଛି ଚାନ୍ଦା ତାଙ୍କୁ ମାଗିବା ।'' ଭଦ୍ର ଲୋକଟି ଏହା ଶୁଣି ପଚାରିଲେ, ''ତିନିଦିନ ତଳେ ସମାଜରେ ଯେଉଁ ଲେଖା ବାହାରିଛି, ସେଥିରେ କ'ଣ ଏମାର ମଠ ମହନ୍ତେ ଆଉ ଧରା ଛୁଆଁ ଦେବେ ?''

ଉତ୍ତର ମିଳିଲା – ''ହଇ ହେ, ସେଇଟା କ'ଣ ମିଛ କଥା ? ଦେଶରେ ଯେତେବେଳେ ଆନ୍ଦୋଳନ ଚାଲିଛି ସ୍ୱାଧୀନତା ପାଇଁ, ସେତେବେଳେ ମହନ୍ତେ ଇଂରେଜ ସରକାରଙ୍କୁ ସମର୍ଥନ କରୁଛନ୍ତି । ଆଉ ଏ'ତ କିଛି ଆମ ଘର ତିଆରି ଲାଗି ଚାନ୍ଦା ନୁହେଁ । ଗୋଟାଏ ସର୍ବସାଧାରଣଙ୍କ କାମର କଥା । ତାଙ୍କଠାକୁ ନ ଯିବା କାହିଁକି ?''

ସତକୁ ସତ କିଛି ସମୟ ପରେ ଅଣ୍ଟାରେ କୋଡ଼ିଏଟି ଟଙ୍କା ଧରି ସେ ମଠରୁ ଫେରିଲେ ।

ଯେତେ ଚେଷ୍ଟା କଲେ କ'ଣ ହେବ ? ପ୍ରବଳ ବିରୋଧ ଯୋଗୁଁ କେବଳ ନୁହେଁ, ଆର୍ଥିକ ସାହାଯ୍ୟ ଯଥେଷ୍ଟ ମିଳିଲା ନାହିଁ । ଫଳରେ ବିଧବାଶ୍ରମଟି ବେଶୀ କାଳ ଚାଲି ନ ପାରି ମୋଟେ ଦୁଇବର୍ଷ ପରେ ଭାଙ୍ଗିଗଲା ।

## (୨୦)

କନିକା ଜମିଦାରୀରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଚାଲିଥିବା କଥା ପୂର୍ବରୁ କୁହାଯାଇଛି । ସେଠାର ବହୁ ଗୋପନୀୟ ତଥ୍ୟ ସମେତ ଜଣେ ବାବାଜୀଙ୍କୁ ସାକ୍ଷ୍ୟ ଦେବାପାଇଁ ଆଚାର୍ଯ୍ୟ ମହାଶୟ କନିକାରୁ ସଂଗ୍ରହ କରିପାରି ଥିଲେ ।

ସେତେବେଳକୁ ଓଡ଼ିଶା କଂଗ୍ରେସର ସଭାପତି ଥାଆନ୍ତି ପଣ୍ଡିତ ଗୋପବନ୍ଧୁ । ସାମାନ୍ୟ ଭୁଲ୍ ସ୍ୱୀକାର କରିଥିଲେ ହୁଏ ତ ମାନହାନି ମୋକଦ୍ଦମାର ଫଏସଲା ହୋଇ ଯାଇ ଥାଆନ୍ତା । କିନ୍ତୁ ଦାସେ ଆପଣେ ସେଥିଲାଗି ମୂଳରୁ ପ୍ରସ୍ତୁତ ନ ଥିଲେ । ଫଳରେ ଦେଶ ଲାଗି ଜେଲ ବରଣ କରିବାହିଁ ତାଙ୍କୁ ପସନ୍ଦ ଲାଗିଲା । ବନ୍ଦୀ ଜୀବନରେ ଯେଉଁ ପ୍ରାଣସ୍ପର୍ଶୀ ଭାଷାରେ ଆପଣାର ଭାବ ସେ ବ୍ୟକ୍ତ କରି ଯାଇଛନ୍ତି ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ତାହା ଅଦ୍ୱିତୀୟ । ଦାସେ ଆପଣେଙ୍କ ଅନୁପସ୍ଥିତିରେ 'ସମାଜ'ରେ ସଂପାଦନା କାମ ଆଚାର୍ଯ୍ୟ ହରିହର ଚଳାଇଲେ । ସେତେବେଳେ ପୁରୀ ଏବଂ କଟକ ଉଭୟ ଥିଲା ତାଙ୍କର କାର୍ଯ୍ୟକ୍ଷେତ୍ର । କାରଣ ସମାଜ ପ୍ରେସ୍ କିଛି ଦିନ ପରେ କଟକ ଚାଲି ଆସିଲା ।

ଦୁଇବର୍ଷ ପରେ ଦାସେ ଆପଣେ ଜେଲରୁ ଫେରିଲେ । ତାଙ୍କର ଅଭ୍ୟର୍ଥନା କରିବା ଲାଗି କଟକଠାରେ ଏକ ରାଜନୈତିକ କର୍ମୀ ସମ୍ମିଳନୀ ଡକାଗଲା । ଏହିଠାରୁ ପଣ୍ଡିତ ଗୋପବନ୍ଧୁ 'ଉତ୍କଳମଣି' ଭାବେ ପରିଚିତ ହେଲେ । ପ୍ରସିଦ୍ଧ ବୈଜ୍ଞାନିକ ପ୍ରଶାନ୍ତ ଚନ୍ଦ୍ର ରାୟ ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ।

ସମାଜର ସଂପାଦକ ହେବା ସଙ୍ଗେ ସଙ୍ଗେ ଦାସେ ଆପଣେ କଂଗ୍ରେସର କାର୍ଯ୍ୟ ପ୍ରତି ମଧ ନଜର ଦେଲେ । ସମୁଦାୟ ଓଡ଼ିଶାର ରାଜନୈତିକ ଜୀବନକୁ ସେ ତଦାରଖ କରିବାକୁ ଲାଗିଲେ ।

ଆଚାର୍ଯ୍ୟ ହରିହର ଥାଆନ୍ତି ପୁରୀରେ । ଗାନ୍ଧୀଜୀଙ୍କର ସୂତାକଟା, ହରିଜନ ସେବା, ରୋଗୀସେବା ଆଦି କାର୍ଯ୍ୟ ସେ କରୁଥାଆନ୍ତି । ତାହା ଭିତରୁ ତ ସେବା କାମଟା ତାଙ୍କ ଲାଗି ପୁରୁଣା । ଏଇ ପ୍ରସଙ୍ଗରେ ଗୋଟିଏ ପୁରୁଣା କଥା ମନେ ପଡ଼େ । ତାହା ହେଉଛି –

ସତ୍ୟବାଦୀ ସ୍କୁଲରେ ଆଚାର୍ଯ୍ୟ ହରିହର ଦିନେ ଆପଣା ନଡ଼ିଆ ପତ୍ର ଚାଳିରେ ଖଟିଆ ପକାଇ ଶୋଇ ଥାଆନ୍ତି । ହରିଜନ ଲୋକଟିଏ ରାତିରେ ଆସି ତାଙ୍କୁ ଉଠାଇଲା ।

ଛୋଟ ପିଲାଟିଏ ତା'ର ହଇଜାରେ ନୟାନ୍ତ ହୋଇ ପଡ଼ିଛି । ସାହା ଭରଷା କେହି ନାହିଁ । ଠାକୁରାଣୀଙ୍କୁ ବଳି ଯାଚି ଯାଚି ଫଳ କିଛି ହେଉନାହିଁ, ଅବା ଆଚାର୍ଯ୍ୟଙ୍କ ଦୟାରେ ପିଲାଟି ବଞ୍ଚିଯାଇ ପାରେ ! – ଏଇଆ ଭାବି ବିଚରା ଲୋକଟି ତାଙ୍କୁ ଆସି ଡାକ ପକାଇଲା । ତା' ଛଡ଼ା ସେବା ପାଇଁ ଆଚାର୍ଯ୍ୟଙ୍କ ମନ ଆଉ ଦୁଆର ତ ସବୁବେଳେ ମୁକୁଳା ! ଏଣୁ ଶୁଣିଲାକ୍ଷଣି ଆଚାର୍ଯ୍ୟ ମହାଶୟ ଚାଲିଲେ ।

ସେ ପିଲାଟିକୁ ହୋମିଓପାଥି ଔଷଧ ଦେଲେ । ହାତରେ ମଇଳା ଟୋଳି ନେଇ ଘରଟାକୁ ସଫା କରିଦେଲେ । ନିଜ କୋଳରେ ଛୁଆଟାକୁ ଜାକିଧରି ରାତିସାରା ଜଗି ବସିଲେ । ସେ ବଞ୍ଚିଗଲା । ପରଦିନ ଦୁଇଘଡ଼ିବେଳକୁ ଛୁଆଟି କଡ଼ ଲେଉଟାଇଲା ।

ହରିଜନ ଲୋକଟି ଜାତିରେ ବାଉରୀ । ପାଖକୁ ଲାଗି ବ୍ରାହ୍ମଣ ଶାସନ – ସମସରପୁର ଗାଁ । ବିଚରା ଲୋକଟିର ମା' କହିଲା, ''ସାଆନ୍ତେ, ଆପଣ ବ୍ରାହ୍ମଣ ଲୋକ । ବାଉରୀ ଘର ଛୁଆକୁ କୋଳରେ ପୂରେଇ ବସିଛନ୍ତି । ଜାତି ଭାଇ ଆପଣଙ୍କର ଦେଖିଲେ କ'ଣ କହିବେ ?'' ଏହା ଶୁଣି ଆଚାର୍ଯ୍ୟେ ହସିଥିଲେ ।

ଏଣୁ ପୁରୀ ସହରରେ ଆଚାର୍ଯ୍ୟ ହରିହର ଏଥର ଏକ ସେବା-ସମିତି ଗଠନ କଲେ । ସ୍ୱାଧୀନତା ପ୍ରେମୀ ବହୁ ଯୁବକ, ସମାଜସେବୀ ଅନେକ ସାଧାରଣ ଲୋକ, ଏଥିରେ ଯୋଗଦେଲେ । ରୋଗୀ ସେବା, ଦୁଃସ୍ଥ ସେବା ଆଦି କାମ ରୀତିମତ ଚାଲିଲା । ଖାଲି ସେତିକି ନୁହେଁ, ଯେତେବେଳେ ଯାହାର ଜରୁରୀ ଦରକାର ପଡ଼େ, ଯେ କୌଣସି ସମୟ ହେଉନା କାହିଁକି, ନିଃସଙ୍କୋଚରେ 'ସେବା-ସମିତି'ଠାକୁ ଆସି ସେ ସାହାଯ୍ୟ ମାଗିଯାଏ । ତୁରନ୍ତ ଲୋକ ଛୁଟନ୍ତି – ସେବା କରିବା ଲାଗି ।

ନାନାରକମର ସେବା ସାଙ୍ଗକୁ ଖଦୀ କାମ, ନିଶା ନିବାରଣ ଆଦି ଗଠନମୂଳକ, ସମାଜ ସୁଧାରକ କାର୍ଯ୍ୟକ୍ରମ ଚାଲିଥାଏ – ଯାହା ଫଳରେ ଗରିବ ଲୋକ କେବଳ ଅନ୍ୟର ସେବା ପାଆନ୍ତି ନାହିଁ, କାମ କରି କିଛି ପଇସା ମଧ ପାଆନ୍ତି । ସେମାନଙ୍କର ଗୁଜୁରାଣ ଚଳେ ।



ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ସହିଁତ ଆଚାର୍ଯ୍ୟ ହରିହର

( ୨୧ )

ବକୁଳବନ ବିଦ୍ୟାଳୟ ପରେ ଆଚାର୍ଯ୍ୟ ମହାଶୟ ପୁରୀରେ ରହିଲେ । ବର୍ତ୍ତମାନ ସେବା ସମିତି ଜରିଆରେ ସେ କାମ ଚଳାଇଲେ । ଓଡ଼ିଶା ତ ଧୋଇ, ମରୁଡ଼ି ଭଳି ଦୈବୀ ବିପଦର ଚାରଭୂଇଁ । ତା' ଛଡ଼ା ଲୋକଙ୍କର ନାନା ରକମର ଅଭାବ ଅସୁବିଧା ସବୁଦିନେ ଲାଗି ରହିଥାଏ । ଏଣୁ ଏସବୁ କଥାକୁ ଠିକ୍ ଭାବେ ସରକାରୀ କାଗଜ ପତ୍ରକୁ ଓ ସରକାରଙ୍କ ଦୃଷ୍ଟିକୁ ଆଣିବା ଲାଗି, ସରାକାରୀ ଲୋକଙ୍କୁ ଦେଖାଇବା ଲାଗି ଦାସେ ଆପଣେ ଜିଲାବୋର୍ଡ଼ଠାରୁ ବିହାର-ଓଡ଼ିଶା ବିଧାନ ସଭା ପର୍ଯ୍ୟନ୍ତ ଗଲେ । ମାତ୍ର ତାଙ୍କ କାମର ମୂଳଦୁଆ ରହିଲା ହରିହରଙ୍କ ଉପରେ । କାକଟପୁରର ବନ୍ୟା ଖବର ଯେତେବେଳେ ସେ ବିହାର-ଓଡ଼ିଶା ଆସେମ୍ଲିରେ ଉପସ୍ଥାପନ କରନ୍ତି, ଗୃହର ସଭ୍ୟମାନଙ୍କ ଆଖିରେ ଲୁହ ସୃଷ୍ଟି ହୁଏ । ସରକାରୀ କଳର ଅନ୍ଧପଣିଆ ସମ୍ବନ୍ଧରେ ଲୋକେ ସଚେତନ ହୁଅନ୍ତି । କିନ୍ତୁ ଆଚାର୍ଯ୍ୟ ହରିହର ଏତିକିରେ ଚୁପ ହୋଇ ଯାଆନ୍ତି ନାହିଁ । ମାରୱାଡ଼ିପଟିରୁ କେମିତି ଚାନ୍ଦା ଉଠିବ, ମାଲଗୋଦାମରୁ ଚୁଡ଼ା, ଚାଉଳ କେଉଁ ଡଙ୍ଗାରେ କେଉଁଠି ପହଞ୍ଚିବ, ତା'ର ବ୍ୟବସ୍ଥା କରନ୍ତି । ଦିନ ନାହିଁ । ରାତି ନାହିଁ । ବନ୍ୟା ମରୁଡ଼ି କିମ୍ବା ହଇଜା ଯାହା କିଛି ବିପଦ ପଡ଼ି ଥାଉନା କାହିଁକି ଯାଇ ଘଟଣା ସ୍ଥଳରେ ହାଜର ହୋଇଯାଆନ୍ତି । ପଛରେ କିଏ ଥାଉ କି ନ ଥାଉ ସେଥିପ୍ରତି ତାଙ୍କର ନିଘା ନ ଥାଏ ।

ସବୁଦିନ ତ ସମାନ ଯାଏ ନା । ୧୯୨୮ ମସିହାରେ ଆଚାର୍ଯ୍ୟ ମହଶୟଙ୍କୁ ଭୀଷଣ ହାଡ଼ଫୁଟି ହେଲା । ସେ ଏଥିରେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଲେ । ହାଡ଼ଫୁଟି ପଛକୁ ନାଳରକ୍ତ ଝାଡ଼ା ମଧ ହେଲା । ପ୍ରାୟ ବର୍ଷେକାଳ ସେ ରୁଗ୍ଣ ହୋଇ ପୁରୀରେ ପଡ଼ି ରହିଲେ । ନିଜେ କିଛି କାମ କରିପାରିଲେ ନାହିଁ । କୁଆଡ଼େ ଯିବା ଆସିବା କରିବାର ବଳ ମଧ ତାଙ୍କର ନ ଥିଲା ।

ପୂର୍ବରୁ ଦାସେ ଆପଣେ ବେମାର ଥିଲେ । କିଛିଦିନ ହେଲା ମ୍ୟାଲେରିଆ ତାଙ୍କୁ ଲାଗି ରହିଥିଲା । ସେଇଥିରେ କୁଇନାଇନ୍ ପାଟିରେ ପଡୁଥାଏ । ଅଥଚ କାମ ଅଟକୁ ନ ଥାଏ । ସବୁକଥା ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଚାଲିଥାଏ ।

ଏତିକିବେଳେ କଲିକତାରେ ପ୍ରବାସୀ ଓଡ଼ିଆ ଶ୍ରମିକମାନେ ଗୋଟିଏ ସଭା କରିବା ପାଇଁ ତାଙ୍କୁ ଡାକିଲେ । ପୂର୍ବରୁ ଏଥିରେ ଯୋଗଦେବା ଲାଗି ସେ ସେମାନଙ୍କୁ ସ୍ୱୀକୃତି ଦେଇସାରିଥିଲେ । ବନ୍ଧୁମାନଙ୍କ ଶତ ମନା ସତ୍ତ୍ୱେ ସେ କଲିକତା ଗଲେ ଏବଂ ପୁରୁଣା ଜ୍ୱର ଟିକେ ଭଲ ଆଡ଼କୁ ଆସିଥିଲେ ସୁଦ୍ଧା ପୁଣି ଲେଉଟିଲା ।

ଯେତେବେଳେ ଦାସେ ଆପଣେ ଶକ୍ତ ବେମାର, ସେତେବେଳକୁ ହରିହର ମୋଟେ ଦୁଇଦିନ ହେଲା ବିଛଣା ଛାଡ଼ିଥାଆନ୍ତି । ମାତ୍ର ଦାସେ ଆପଣଙ୍କ ବେମାର କଥା ଶୁଣି ସେ ପୁରୀଠାରେ ଚୁପ ରହି ପାରନ୍ତେ କେମିତି ?

ଆଗକୁ ଗୁଣ୍ଡିଚା ଯାତ୍ରା ଆସୁଛି । ଯାତ୍ରୀ କୋଳାହଳରେ ପୁରୀ ସହର ପୁରି ଉଠିବ । କିନ୍ତୁ କିଏ ଜାଣେ କେତେ ମଡ଼ା ଶୋଇବେ ଏଠି ଦିଅଁ ଦର୍ଶନକୁ ଆସି ? ବେମାର ପଡ଼ିଥିଲେ ବି ଆଚାର୍ଯ୍ୟ ହରିହରଙ୍କ ମନ ଏଥିଲାଗି ପରାମର୍ଶ ଦେଉଥିଲେ ପୂର୍ବରୁ କି ପ୍ରତିଷେଧ ବ୍ୟବସ୍ଥା କରାଯାଇ ପାରେ

ସେମାନଙ୍କୁ ସୂଚାଉଥିଲେ । ମାତ୍ର କୋଟିଏ ଲୋକର ମଉଡ଼ମଣି ଆଜି ବେମାର — ଏଇ କଥା ରଥଯାତ୍ରାର ବିକଳତାକୁ ଆହୁରି ଟପିଗଲା । ସେ ସାଙ୍ଗେ ସାଙ୍ଗେ ଛୁଟିଲେ ସତ୍ୟବାଦୀ ।

ଛୋଟ କୁଡ଼ିଆଟି ଭିତରେ ବତୀ ମିଞ୍ଜି ମିଞ୍ଜି ଜଳୁଛି । ଗୋଡ଼ ତଳକୁ ବସି ଆଉଁଷି ଦେଉଛନ୍ତି ଶିଷ୍ୟା ସୁନାମଣି ଦେବୀ । ନିଜ ବଳରେ ଉଠି ଚାଲିବାର ଶକ୍ତି ତାଙ୍କର ନାହିଁ । କୁଡ଼ିଆଟିର ଗୋଟିଏ କୋଣରେ ଦୁଇ ଖଣ୍ଡ ଇଟା ମଝିରେ ଗୋଟିଏ ଛେଲୁଆ । ତାକୁ ହିଁ ବ୍ୟବହାର କରାଯାଉଛି ପାଇଖାନା ଭାବରେ । ଶିଷ୍ୟ ବିଶ୍ୱନାଥ ପରିଡ଼ା ତାଙ୍କୁ ଧରି ବିଛଣାରୁ ପାଇଖାନା ପର୍ଯ୍ୟନ୍ତ ନେବା ଆଣିବା କରୁଛନ୍ତି । କୃପାସିନ୍ଧୁ ହୋତା ବସିଛନ୍ତି ପିଣ୍ଡାରେ । ପାଖରେ ଆଉ ଆଉ ସାଥୀମାନେ । ହରିହରଙ୍କୁ ଦେଖିବାକ୍ଷଣି ଦାସ ଆପଣେଙ୍କ ପାଟିରୁ ବାହାରି ପଡ଼ିଲା ''କ'ଣ ଆସିଲ ?'' ବୋଧହୁଏ ଆଉକିଛି ଅଧିକ କହିବାର ବେଳ ସେତେବେଳେ ନଥିଲା । ଠିକ୍ ଦିନକ ପରେ — ନେତ୍ରୋତ୍ସବ ଦିନ ବର୍ଷା କୁଟୁଛି, ଦିନଟା ସଞ୍ଜପରି ଲାଗୁଛି, ଓଡ଼ିଶାର କୋଟିଏ ନରନାରୀଙ୍କୁ ଅଥଳ ଦୁଃଖ ସାଗରରେ ଭସେଇଦେଇ ଦାସେ ଆପଣେ ସେପୁରକୁ ଚାଲିଗଲେ ।

ସେଦିନ ୧୯୨୮ ମସିହା ଜୁନ୍ ୧୭ ତାରିଖ । ସେ ଏକ ମୁହୂର୍ତ୍ତ — ଯାହାକୁ ଆଚାର୍ଯ୍ୟ ମହାଶୟ ଭୁଲିପାରି ନାହାନ୍ତି । ସେତେବେଳେ ସେ କ'ଣ ଅନୁଭବ କଲେ, କ'ଣ ତାଙ୍କ ମନରେ ଉଠିଲା, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କାହାରିକୁ କିଛି ସେ ବିଷୟରେ ସେ କହି ନାହାନ୍ତି । ଦୁଃଖରେ ଅଧୀର ହୋଇ ଆଖିରୁ ତାଙ୍କର ସେତେବେଳେ ଲୁହର ଧାର ଛୁଟିଥିଲା କି ନା ତାଙ୍କର ମନେ ନାହିଁ । ପିଲାଟିଦିନୁଁ — ଯାହାଙ୍କର ମମତା ଆଉ ମାର୍ଗଦର୍ଶନ ଭିତରେ ସେ ଚାଲିଆସିଥିଲେ, ତାଙ୍କର ଅଭାବ ତାଙ୍କୁ ବଡ଼ ବାଧିଲା । ସେ ନୀରବ ହୋଇ ବସି ରହିଲେ ।

ଓଡ଼ିଶାର ଗାଆଁ ଗହଳି ଭିତରେ ଥିବା ସାଧାରଣ ଅପାଠୁଆ କର୍ମୀଠାରୁ ଆରମ୍ଭକରି ଉପର ମହଲର ନେତାମାନଙ୍କ ପର୍ଯ୍ୟନ୍ତ କେହି କିଛି କୂଳ କିନାରା ପାଇଲେ ନାହିଁ । ଆଗକୁ କ'ଣ କରିବାକୁ ହେବ, କେହି କିଛି ଭାବିପାରିଲେ ନାହିଁ । ସତେ ଅବା ଓଡ଼ିଶା ସାରା ଯୁଆଡ଼େ ଦେଖିଲେ, ତେଣେ ଖାଲି ଶ୍ମଶାନ !

## (୨୨)

ସହକର୍ମୀମାନେ ଯେ ଯୁଆଡ଼େ ନିଜ ନିଜ ବାଟରେ ଆଚାର୍ଯ୍ୟ ମହାଶୟଙ୍କଠାରୁ ଟିକେ ଅଲଗା ହୋଇ ସାରିଥିଲେ । ଶେଷକୁ ଥିଲେ ସେଇ ପୁରୁଣା ବାଟରେ ଦାସେ ଆପଣେ ଓ ଆଚାର୍ଯ୍ୟ ହରିହର । ଦାସେ ଆପଣେଙ୍କ ପରେ ପୁଣି ଜଣେ 'ଗୋପବନ୍ଧୁ' ଲୋକଙ୍କ ଆଖି ଆଗକୁ ଆସିଲେ । ସେ ହେଲେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ । ସଂକ୍ଷେପରେ ଲୋକେ ଡାକନ୍ତି ଗୋପବାବୁ । କଲିକତା ବିଶ୍ୱବିଦ୍ୟାଳୟରୁ ଗଣିତ ବିଦ୍ୟାରେ ସର୍ବୋଚ୍ଚ ଡିଗ୍ରୀ ପାଇ ସେ ଓଡ଼ିଶା ସରକାରଙ୍କ ଅଧୀନରେ ଡେପୁଟି ଚାକିରୀ ପାଇଥିଲେ । କିନ୍ତୁ ଲୋକଙ୍କ ଦୁଃଖ ଦାରିଦ୍ର୍ୟକୁ ଖାତିର ନକରି ଗୋରା ସରକାରଙ୍କର ସ୍ତୁତି ଗାଇବାକୁ ତାଙ୍କୁ ସୁଖ ଲାଗିଲାନି । ବିବେକର ଦଂଶନରେ ସେ ସରକାରୀ ଚାକିରୀରୁ ଇସ୍ତଫା ଦେଇଦେଲେ । ତା'ପରେ ତାଙ୍କର ଦେଶ କାମ ଚାଲିଲା । ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ । ଦାସେ

ଆପଣେଙ୍କ ମୃତ୍ୟୁ ପରେ ଆଚାର୍ଯ୍ୟ ମହାଶୟ ବ୍ୟଥିତ ହୃଦୟରେ ପୁରୀରେ ଥାଆନ୍ତି । ସାନଭାଇ ଡାକ୍ତର ଶଙ୍କର ଦାସଙ୍କ ପିଣ୍ଡାରେ ତାଙ୍କର ବିଛଣା ପଡ଼ିଥାଏ । ମାତ୍ର ଖାଲି ବସି ରହିବାଟା ଗୋପବାବୁଙ୍କ ବିଚାରରେ ଠିକ୍ ନ ଥିଲା । ତେଣୁ ସେ ପୁରୀକୁ ଗଲେ । ଆଚାର୍ଯ୍ୟ ମହାଶୟଙ୍କୁ କହିଲେ, ''ହରି ଭାଇନା; ଏଠି ଆଉ ବସିଛନ୍ତି କାହିଁକି ? ଚାଲନ୍ତୁ କଟକରେ ସ୍ୱରାଜ ଆଶ୍ରମ ପିଣ୍ଡାରେ ବସିବେ ।''

ପୁଣି ଏକ ନୂଆ ଗୋପବନ୍ଧୁଙ୍କୁ ପାଇ ଆଚାର୍ଯ୍ୟ ମହାଶୟ ତାଙ୍କୁ ଆପଣାର ନେତା ବୋଲି ବାଛି ନେଲେ । ତାଙ୍କରି କଥାରେ ସେ ଆସିଲେ କଟକ ।

୧୯୨୯ ମସିହାରେ କଟକ ଜିଲ୍ଲାର ରାଜନୈତିକ କର୍ମୀମାନଙ୍କର ଏକ ସମ୍ମିଳନୀ ହେଲା କେନ୍ଦ୍ରାପଡ଼ାଠାରେ । ଆଚାର୍ଯ୍ୟ ମହାଶୟ ତା'ର ସଭାପତିତ୍ୱ କରିଥିଲେ ।

ଏଥର ଆସିଲା ୧୯୩୦ ମସିହାର ଝଡ଼ । ଗାନ୍ଧୀଜୀ ଦେଶଟାକୁ ଲବଣ ସତ୍ୟାଗ୍ରହ ପାଇଁ ଆହ୍ୱାନ ଦେଲେ । ନିଜେ ସାବରମତୀରୁ ଚାଲିଲେ ଦାଣ୍ଡୀ । ଓଡ଼ିଶାରେ ମଧ ପଦଯାତ୍ରାର ଆୟୋଜନ ଚାଲିଲା । କଟକଠାରୁ ପଚିଶ ଜଣ ସତ୍ୟାଗ୍ରହୀ ଗୋପବାବୁଙ୍କ ଘର ବାଖରାବାଦରୁ ବାହାରି କଟକ ସହରରେ ବାଙ୍କାବଜାର, ବକ୍ସିବଜାର ଏବଂ ଚୋଦ୍ରା ଡେଇଁ ଜଗତପୁରଠାରେ ପହଞ୍ଚିଲେ । ଲୁଣ ମାରିବା ଲାଗି ଚାଲୁଥିବା ଏଇ ପଦଯାତ୍ରାର ନେତୃତ୍ୱ ନେଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ।

ପୂର୍ବରୁ ସରକାର କଂଗ୍ରେସ ଅନୁଷ୍ଠାନ ବେଆଇନ ବୋଲି ଘୋଷଣା କରିଥିଲେ । ନିଜକୁ 'କଂଗ୍ରେସବାଲା' ବୋଲି ପରିଚିତ କରାଇବା ଥିଲା ସରକାରଙ୍କ ଆଗରେ ଏକ ଅପରାଧ । ଗୋପବାବୁ ଥିଲେ ଜଣେ ଜଣାଶୁଣା କଂଗ୍ରେସ କର୍ମୀ । ଏଣୁ କଟକ ସଦର ସବ୍‌ଡିଭିଜନ ଡେଇଁ ବାହାରକୁ ଯିବା ତାଙ୍କ ଲାଗି ମନା ଥିଲା, ସେ ମାନିଲେ ନାହିଁ । ଚାଲିଲେ । ବାଲେଶ୍ୱର ଜିଲ୍ଲାରେ ଇଞ୍ଚୁଡ଼ି ହେଉଛି ସମୁଦ୍ର କୂଳର ଗାଁଟିଏ । ସେଇଠି ଲୁଣ ମାରିବା ପାଇଁ ପୂର୍ବରୁ ସ୍ଥିର କରାଯାଇଥିଲା । ଲୁଚି ଛପି ଏ କାମ ହେଉ ନଥିଲା । ରୀତିମତ ସରକାରଙ୍କୁ ନୋଟିସ ମଧ ଦିଆ ସରିଥିଲା ।

କଟକ ସଦର ସବ୍‌ଡିଭିଜନ ଓ କେନ୍ଦ୍ରାପଡ଼ାର ମଝି ସ୍ଥାନରେ କାକଟିଆ ଗୋଟିଏ ଗାଁଠାରେ ଗୋପବାବୁଙ୍କୁ ଜଣେ ପୋଲିସ କର୍ମଚାରୀ ମଟରଗାଡ଼ି ନେଇ ଭେଟିଲେ ।

ବୁଝିବାକୁ ବାକୀ ରହିଲା ନାହିଁ । ସଙ୍ଗେ ସଙ୍ଗେ ଗୋପବାବୁ ତାଙ୍କୁ ପଚାରିଲେ, ''କ'ଣ ଏଥର ମୋତେ ଯିବାକୁ ହେବ ?''

ପୋଲିସ କର୍ମଚାରୀ ଜଣକ ଉତ୍ତର ଦେଲା – ''ହଁ'' ।

ତା'ପରେ ଗାଡ଼ି ଚାଲିଲା କଟକ । କର୍ମଚାରୀ ଜଣକ ମନେ କରିଥିଲେ ହୁଏତ କିଛି ଗଣ୍ଡଗୋଳ ସୃଷ୍ଟିହେବ । କିନ୍ତୁ ସେ ସବୁ କିଛି ହେଲାନି । ସତ୍ୟାଗ୍ରହୀ ମାନେ ତ ଏଥିପାଇଁ ପୂର୍ବରୁ ପ୍ରସ୍ତୁତ ଥିଲେ । ତା'ଛଡ଼ା ଏକ ଶାନ୍ତ ବାତାବରଣ ଭିତରେ କାହିଁକି ଅଶାନ୍ତି ସୃଷ୍ଟି ହୁଅନ୍ତା ?

କଟକରୁ କେନ୍ଦ୍ରାପଡ଼ା, ଯାଜପୁର, ଭଦ୍ରକ, ସୋରୋ ଏବଂ ବାଲେଶ୍ୱର ଦେଇ ପଦଯାତ୍ରା

ଚାଲିଲା । ଯାତ୍ରୀ ଦଳରେ ଏଥର ରହିଲେ ଆଚାର୍ଯ୍ୟ ହରିହର, ପଣ୍ଡିତ ପ୍ରାଣକୃଷ୍ଣ ପଢିଆରୀ, ଗୁଣନିଧି ମହାନ୍ତି ପ୍ରମୁଖ । ମାତ୍ର ସେଦିନର ପଦଯାତ୍ରା, ସେଦିନର ସ୍ମୃତି ଓଡ଼ିଶାର ଲୋକଙ୍କ ମନରେ ରହିଥିବ ଓ ଅଛି ।

ଗୋପବାବୁଙ୍କୁ ଧରି ନିଆଯିବା ପରେ ଯାତ୍ରୀ ଦଳର ନେତା ହେଲେ ଆଚାର୍ଯ୍ୟ ହରିହର । ସବୁରି ପିନ୍ଧିବା ଲୁଗା ଭିତରେ ଧୋତି ଆଉ ଚାଦର; ପିଠିରେ ବନ୍ଧା ହୋଇଥାଏ ସପ; ଲୋଟା, ଅଣ୍ଟାରେ ଥାଏ ଖଣ୍ଡିଏ ଗାମୁଛା । ସମସ୍ତେ ଚାଲିଥାଆନ୍ତି । ବାଟରେ ଗାଁ ଲୋକେ ଦଳକୁ ଦଳ ଫୁଲମାଳ, ସିନ୍ଦୁର ଟୋପା, ଦୁବ, ଅକ୍ଷତ ପ୍ରଭୃତି ଅଜାଡୁ ଥାଆନ୍ତି । ସେଦିନ ପରା ଆଚାର୍ଯ୍ୟ ମହାଶୟଙ୍କ ପାଟିରୁ ବାହାରି ପଡ଼ିଲା — ''ଆରେ, ଆମକୁ ତ ସିନ୍ଦୁର ଦେଇ ମଙ୍ଗଳା ସଜାଇ ଦେଉଥିଲେ ।'' ମୁହଁସାରା ଲାଲ ରଙ୍ଗରେ ଆଉ ଜାଗା ନ ଥିଲା । ଯେଉଁଠି ରହଣୀ ପଡୁଥାଏ, ସେଠାରେ ସଭା କରାଯାଉଥାଏ । ଗାନ୍ଧୀଜୀଙ୍କର ବାର୍ତ୍ତା ଓ ସ୍ୱାଧୀନତାର ବିଚାର ଲୋକେ ଶୁଣୁ ଥାଆନ୍ତି ।''

ନିର୍ଦ୍ଧାରିତ ଦିନରେ ଇଞ୍ଚୁଡ଼ି ଚଟାଣଠାରେ ଲୁଣ ମରାଯିବା ଆଗରୁ ପୋଲିସ ଏକଥା ଜାଣିଥିଲେ । ଏଣୁ ସତ୍ୟାଗ୍ରହୀମାନଙ୍କୁ ସେଠାରେ ବନ୍ଦୀ କରାଗଲା ।

ଇଞ୍ଚୁଡ଼ି ଚଟାଣଠାକୁ ସତ୍ୟାଗ୍ରହୀମାନେ ଲୁଣ ମାରିବାକୁ ଯାଇଥିବାରୁ ଏଣେ ଗାଁ ବାଲାମାନେ ଭାତ, ଡାଲଣା କରି ସେମାନଙ୍କ ପାଇଁ ରଖିଥାଆନ୍ତି । କିନ୍ତୁ ପଦଯାତ୍ରୀମାନେ ଆଉ ଫେରିଲେ ନାହିଁ ।

ଇଞ୍ଚୁଡ଼ିଠାରେ ଜଗି ବସିଥିବା ପୋଲିସବାଲାମାନେ ପୂର୍ବ ରାତିଠାରୁ ଆସି ତମ୍ବୁ ପକେଇ ରହି ଥଆନ୍ତି । ମାତ୍ର ସେଠାରେ ଗାଁବାଲା ସେମାନଙ୍କୁ ପାଣି ଟୋପାଏ କି ବିଡ଼ି ଖଣ୍ଡେ ପର୍ଯ୍ୟନ୍ତ ସାହାଯ୍ୟ କରୁ ନଥାନ୍ତି । ଚୁଡ଼ା ଅବା କିଏ ଦେବ ? ଏଣୁ ସେ ଦିନ ସକାଳର ଜଳଖିଆ ସେମାନଙ୍କର ହୋଇ ପାରି ନଥାଏ । 'ଅମଳ' ବି କିଛି ହେଲେ ପାଟିରେ ପଡ଼ି ନଥାଏ । ବଡ଼ ହଇରାଣ ହେଉ ଥା'ନ୍ତି ସେମାନେ ।

ଏ କଥା ସତ୍ୟାଗ୍ରହୀମାନେ ଜାଣି ପାରିଲେ । କହିଲେ, ''ଯଦି ଆପଣମାନେ ଅନୁମତି ଦେବେ, ତେବେ ଆମ ପାଇଁ ତିଆରି ହୋଇଥିବା ସବୁତକ ଜିନିଷ ଗାଁଲୋକେ ଏଠାକୁ ବୋହି ଆଣିବେ ।''

ପୋଲିସ ବାଲା ଆଉ ରାଜି ନ ହୁଅନ୍ତେ କେମିତି ? ରାଜି ନ ହେବାର ବା କ'ଣ ଅଛି ? ତାହାହିଁ ହେଲା । ଗାଁ ଲୋକେ ହାଣ୍ଡି ଆଉ କଦଳୀ ପତ୍ର, ପାଣି ବାଲଟି ତମ୍ବୁ ପାଖକୁ ବୋହି ଆଣିଲେ । ସମସ୍ତେ — ପୋଲିସ ଓ ସତ୍ୟାଗ୍ରହୀ ଲୋକେ ମିଶି ପେଟେ ପେଟେ ଖାଇଲେ । ତା'ପରେ ଉପରଓଳି ପୋଲିସ ଭ୍ୟାନ ଚାଲିଲା ଇଞ୍ଚୁଡ଼ିରୁ ବାଲେଶ୍ୱର — ସତ୍ୟାଗ୍ରହୀମାନଙ୍କୁ ବେଡ଼ି ପିନ୍ଧେଇ ସାରି । ''ମହାତ୍ମା ଗାନ୍ଧୀ କୀ ଜୟ'', ''ଭାରତ ମାତା କୀ ଜୟ'' ଶବ୍ଦରେ ଲୋକେ ଛଳ ଛଳ ଆଖିରେ ବିଦାୟ ଦେଲେ ସତ୍ୟାଗ୍ରହୀମାନଙ୍କୁ । ସେମାନେ କିନ୍ତୁ ହସୁଥିଲେ ।

## (୨୩)

ଓଡ଼ିଶା ସେତେବେଳେ ସ୍ୱତନ୍ତ୍ର ପ୍ରଦେଶ ହୋଇ ନ ଥାଏ । ବିହାର ସହିତ ମିଶି କରି ରହିଥିବା ହେତୁ ସେତେବେଳେ ଓଡ଼ିଶାରେ ଜିଲା ଜେଲ ବ୍ୟତୀତ କେନ୍ଦ୍ରୀୟ ଜେଲ ନ ଥିଲା । ଏଣୁ ମୁଖ୍ୟ ରାଜନୈତିକ ବନ୍ଦୀମାନେ ବିହାର ପ୍ରଦେଶର ହଜାରୀବାଗ କେନ୍ଦ୍ର ଜେଲକୁ ଯାଉଥିଲେ । ସେତେବେଳକାର ସ୍ୱାଧୀନତା ସିପାହୀମାନଙ୍କର ହଜାରୀବାଗ ହିଁ ଥିଲା ବିଶ୍ରାମାଗାର । ପୂର୍ବତନ ରାଷ୍ଟ୍ରପତି ଡ: ରାଜେନ୍ଦ୍ର ପ୍ରସାଦ, ବିହାରର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିଂହ ଓ ବିହାରର ଆହୁରି ବହୁ ଲୋକପ୍ରିୟ ନେତା ସେହି କେନ୍ଦ୍ରୀୟ ଜେଲ୍‌କୁ ବିଭିନ୍ନ ସମୟରେ ଆସୁ ଥାଆନ୍ତି । ଓଡ଼ିଶାର ଲବଣ ସତ୍ୟାଗ୍ରହୀ ଦଳ ସେହି ହଜାରୀ ବାଗରେ ଯୁଟିଲେ ।

ସରକାରଙ୍କ ଆଇନ୍ ଭଙ୍ଗ ବାବଦକୁ ସେ ଥରକ ପାଇଁ ମୋଟେ ଛ ମା'ସ ଜେଲ୍ ଦଣ୍ଡ ବ୍ୟବସ୍ଥା ଥାଏ । ସେତକ ଶେଷ ହେବାପରେ ସମସ୍ତେ ଲେଉଟିଲେ । ମାତ୍ର ସେ ଲେଉଟିବାର ଉଦ୍ଦେଶ୍ୟ ନଥିଲା ଚୁପ୍ ଚାପ ହୋଇ ଘରେ ବସି ରହିବା । ପୁଣି କିପରି ଜେଲ୍ ଯିବାକୁ ହେବ, ସେଥିଲାଗି ନୂଆ ଲୋକଙ୍କୁ ତିଆରି କରିବା ଲାଗି ଚେଷ୍ଟା କରିବା ଥିଲା ମୁଖ୍ୟ ଉଦ୍ଦେଶ୍ୟ । ପାଞ୍ଚବର୍ଷର ପିଲାଠାରୁ ପଞ୍ଚଷଠୀ ବର୍ଷର ବୁଢ଼ାଙ୍କ ପର୍ଯ୍ୟନ୍ତ ବି ଏହି ଆନ୍ଦୋଳନ କାମରେ ଲାଗି ପଡୁଥିଲେ ।

ଆନ୍ଦୋଳନ କାହିଁକି, ଯେ କୌଣସି କାର୍ଯ୍ୟ କରିବା ଲାଗି ମନର ବଳ ଯେପରି ଦରକାର, ଶାରୀରିକ ଦୃଢ଼ତା ସେହିପରି ଲୋଡ଼ା । ବିଶେଷତଃ ସ୍ୱାଧୀନତା ଆନ୍ଦୋଳନ ଲାଗି ତ ଏହା ଖୁବ୍ ବେଶୀ ଦରକାର । ଦେହର ବଳ ଆଉ ମନର ଜୋର ଲୋକଙ୍କ ଭିତରେ ଅତୁଟ ରଖିବାକୁ ହେଲେ, ଦେଶରୁ ନିଶା ଦ୍ରବ୍ୟକୁ ଉଠେଇବାକୁ ହେବ । ଏଇଥିପାଇଁ ଭାରତ ବର୍ଷରେ ମହାତ୍ମା ଗାନ୍ଧୀ ସ୍ୱାଧୀନତା ସାଙ୍ଗକୁ ନିଶାନିବାରଣ ଉପରେ ଜୋର ଦେଲେ । ଯେତେବେଳେ ଚୀନ ଦେଶରେ ଆନ୍ଦୋଳନ ହେଲା, ଲୋକଙ୍କୁ ଦାରିଦ୍ର୍ୟ ଓ ଦୁଃଖ-ଦୁର୍ଦ୍ଦଶାର ପଙ୍କରୁ ଉଠାଇବା ପାଇଁ ସେଠାକାର ନେତା ସନାୟାତ୍ ସେନ୍ ତାଙ୍କ ଲୋକଙ୍କୁ ଅଫିମ କବଳରୁ ମୁକ୍ତ କଲେ । କାରଣ ନିଶା ହେଉଛି ମଣିଷର ମାରାତ୍ମକ ଶତ୍ରୁ ।

ବାଲେଶ୍ୱରର ବାଞ୍ଛାନିଧି ବାବୁ ଓରଫ ଶ୍ରୀଯୁକ୍ତ ବାଞ୍ଛାନିଧି ମହାନ୍ତି ବୋଲି ଜଣେ ଯୁବକ ଆନ୍ଦୋଳନରେ ଯୋଗଦେଇ ଥାଆନ୍ତି । କଟକର ଶ୍ରୀଯୁକ୍ତ ଅଟଳ ବିହାରୀ ଆଚାର୍ଯ୍ୟ ଯେମିତି କେହି ନ ଆସିଲେ ସୁଦ୍ଧା ଏକାକୀ ପତାକା ଧରି ବାହାରି ପଡ଼ନ୍ତି, ବାଞ୍ଛାନିଧିବାବୁ ମଧ ଠିକ୍ ସେହିପରି ବେକରେ ହାରମୋନିୟମ୍ ଖଣ୍ଡେ ଓହଳେଇ ଦେଇ ଆପଣା ରଚିତ ଗୀତକୁ ଗାଁ ଗାଁ ଗଳି କନ୍ଦି ଗାଇ ବୁଲନ୍ତି । ପୁଣି କବି ବୀରବାବୁଙ୍କ ଗୀତ ବୋଲନ୍ତି କର୍ମୀମାନେ । ହେଇ ଶୁଣନ୍ତୁ —

ମଦଖଟି ତଳେ          ହାକିମେ ଡାକନ୍ତି
ମହୁଆଙ୍କୁ ବାଟ ଛାଡ଼
ମଦ ଖାଇବାରେ          ବାଧାଦେବ ଯେହୁ
ଭାଗ୍ୟେ ତାର ବେତ ମାଡ଼ ହେ

ବୁଦ୍ଧି ହୋଇଲାଣି ବଣା

ଦାଣ୍ଡେ ମହତ ପଡୁଛି ଜଣା ହେ । ଘୋଷା ।

ଏ ହେଉଛି ୧୯୩୦ ମସିହାର ଗୀତ । ଲୋକେ ସ୍ୱାଧୀନତା ପାଇଁ ଲଢ଼ିବେ । କିନ୍ତୁ ସ୍ୱାଧୀନତାର ସୁଆଦ ସମସ୍ତେ ପାଇବା ଦରକାର । ଏ କଥା ଖୁବ୍ ଜୋର ସୋରରେ ଗାନ୍ଧୀଜୀ ଭାବୁଥିଲେ । ଏଣୁ ସୂତାକଟା, ନିଶା ନିବାରଣ, ଲୁଣମରା, ଗ୍ରାମ ସଫେଇ ସାଙ୍ଗକୁ ସେ ଆଉ ଏକ କଥା ଯୋଡ଼ିଲେ । ତାହା ହେଉଛି 'ହରିଜନ ସେବା' । ରକ୍ଷଣଶୀଳ ଅନେକ ଭଲ ଭଲ କର୍ମୀ ମଧ୍ୟ ଏହାର ବିରୋଧ କଲେ । କିନ୍ତୁ ଫଳ କିଛି ହେଲା ନାହିଁ । ସେମାନେ ଶେଷରେ ବୁଝିଗଲେ । ଗାନ୍ଧୀଜୀ ଲୋକଙ୍କ ମନରୁ ଛୁଆଁ-ଅଛୁଆଁ ଭାବ ଲୋପକରିବାର ଏଇ ବିଚାରକୁ ପ୍ରଚାର କରିବା ପାଇଁ ଭାରତର ବିଭିନ୍ନ ପ୍ରଦେଶରେ ପଦଯାତ୍ରା ଚାଲିଲା ।

କେହି ସ୍କୁଲ ତ କେହି ଅବା କଲେଜ ଛାଡ଼ି, ନିଆଁଗିଳା ବୁଦ୍ଧି ଧରି ସ୍ୱାଧୀନତା ଆନ୍ଦୋଳନକୁ ଡେଇଁପଡ଼ି ଥାଆନ୍ତି ।

ଛୋଟ ଛୋଟ ପିଲାଗୁଡ଼ାଙ୍କୁ ନେଇ ଯେଉଁ ବାହିନୀ ଗଢ଼ା ଯାଇଥାଏ, ତା' ନାଁ ହେଲା 'ବାନର ସେନା' । ଏଥିରେ ଅଠର ବର୍ଷର ତଳକୁ ପିଲାମାନେ ଥାଆନ୍ତି । ତ୍ରେତୟା ଯୁଗରେ ରାବଣକୁ ମାରି ଅନ୍ୟାୟକୁ ଜୟକରି ସତ୍ୟର ମୂର୍ତ୍ତିମତୀ ସୀତାଙ୍କୁ ଅସୁରମାନଙ୍କ ହାତରୁ ଛଡାଇ ଆଣିବା ଲାଗି ଯୁଦ୍ଧ ହୋଇଥିଲା । କିନ୍ତୁ ଜିତାପଟ ପାଇଥିଲେ କେଉଁମାନେ ? ଯାହାଙ୍କର ବୀର ତାଲିକାରେ ନାଁ ନଥିଲା, ବଣରେ ଫଳମୂଳ ଖାଉଥିଲେ, ପର୍ବତ କୋଳରୁ ବହି ଆସୁଥିବା ଝରଣାର ପାଣି ଯେଉଁମାନଙ୍କୁ ସ୍ୱର୍ଗର ସୁଖ ଯୋଗାଉଥିଲା ସେହି ମାଙ୍କଡ଼ମାନେ ଜୟଲାଭ କରିଥିଲେ । ଲଙ୍କାର ପ୍ରତାପୀ ରାଜା ରାବଣର ସୁନାପୁରୀକୁ ଧ୍ୱଂସ କରିଥିଲେ ସେମାନେ । ପ୍ରାଚୀନ ଇତିହାସରେ ଏହି କାହାଣୀ ହିଁ ୧୯୩୦ର ସେ 'ବାନର ସେନା' ବଳ ଦେଉଥିଲା, ଉତ୍ସାହ ଯୋଗାଉଥିଲା ।

ପିଲାଏ ଗୀତ ଗାଇ ଚାଲି ଥାଆନ୍ତି । ପୁଲିସ ଭ୍ୟାନ ଆସି ପହଞ୍ଚେ । ଗାଡ଼ିରେ ଉଠାଇ କାହିଁ କେତେଦୂର ନେଇ କେଉଁଠି ବଣ ମଝିରେ, କେଉଁଠି ଅଜଣା ଗାଁରେ, କେଉଁଠି ସମୁଦ୍ର କୂଳରେ ଛାଡ଼ି ଦେଇ ଆସେ । ସେଥିରେ ସେମାନେ ଡରନ୍ତି ନାହିଁ । ଗାଆଁକୁ ଗାଆଁ ଡେଇଁ, ଘରେ ଘରେ ମାଉସୀ, ପିଉସୀ, ମା'ର ସମ୍ପର୍କ ଯୋଡ଼ି, କାହାଘରୁ ବାସି ତୋରାଣିତ ଆଉ କାହା ଘରୁ ଶୁଖୁଆ ପୋଡ଼ା ଖାଇ ପୁଣି ଦଳ ବାନ୍ଧି, ଗୀତ ଗାଇ ଆସି ଘାଟି ମୁଣ୍ଡ କଟକ ସ୍ୱରାଜ ଆଶ୍ରମରେ ଯୁଟନ୍ତି । ପୁଣି ଚାଲେ ଗୀତ ବୋଲା – ପିକେଟିଂ – ଡ୍ରିଲ ।

ପୁଲିସକୁ ଏସବୁ ଭଲ ଲାଗେ ନାହିଁ । ତା'ପରେ ହୁଏ ନିର୍ଘୁମ ମାଡ଼ । ପିଠିରେ ନୋଳା ବସେ । ହାତ, ଗୋଡ଼, ଜଙ୍ଘ ସବୁ ପାଚିଲା କୁନ୍ଦୁରି ଭିତର ଭଳି ଫାଟି ଯାଇ ଲାଲ ଦିଶେ । କାହାର ଅବା ଚେତା ବୁଡ଼ିଯାଏ । ତଥାପି ସେମାନେ ଡରନ୍ତି ନାହିଁ । ପାଟିରୁ ବାହରୁଥାଏ– ''ମରିବୁ ପଛେ ଡରିବୁ ନାହିଁ, ଆମେ ଗାନ୍ଧୀ ବୁଢ଼ାର ଚେଲା'' ।

ଏ ସବୁ କଥା କଳ୍ପନା କରିବା ଆଜି ସ୍ୱାଧୀନ ଦେଶର ସ୍କୁଲ ପିଲାଙ୍କ ପକ୍ଷେ ସମ୍ଭବ ନୁହେଁ । ଆଜି ତ ସ୍କୁଲ ଘରୁ ପଙ୍ଖା ବିଗିଡ଼ି ଗଲେ, କାନ୍ଥରେ ଚୂନ ନ ଲାଗିଲେ, ନୂଆ କ୍ୟାରମ୍ ବୋର୍ଡ଼ କି ରିଂ

ବଲ କ୍ଲାସ ପାଇଁ ନ ଆସିଲେ ପିଲେ ଉଚ୍ଛନ୍ନ ହୋଇ ଯାଉଛନ୍ତି । ମାଷ୍ଟରଙ୍କୁ ଜେଲା ଫୋପଡ଼ାଠାରୁ ସ୍କୁଲରେ ଷ୍ଟ୍ରାଇକ୍ ଯାଏ କେତେ କ'ଣ ହୋଇଯାଉଛି । କୁହାଯାଉଛି କ'ଣ ନା- ଏଠି ପଢ଼ିବାର ସୁବିଧା ଯୋଗାଇ ଦିଆଯାଉ ନାହିଁ ।

କିନ୍ତୁ ଆଜିକି ସତୁରୀ ବର୍ଷ ତଳେ ଛୋଟ ପିଲେ ବି ସ୍କୁଲ ଛାଡ଼ି ପାଠକୁ ମୁରୁଛି ଦେଇ ଦେଶ କାମରେ ବାହାରି ପଡ଼ିଥିଲେ । ତାଙ୍କ ଆଗରେ ଆଦର୍ଶ ଥିଲା । ଆଚାର୍ଯ୍ୟ ହରିହରଙ୍କ ଭଳି ନେତା ଥିଲେ । ଗୋପବାବୁଙ୍କ ଭଳି ତ୍ୟାଗୀ ଥିଲେ । ଉଭୟଙ୍କ ପରି କର୍ମୀ ମଧ ଥିଲେ । ଫଳରେ ସେମାନେ ବିଗିଡ଼ି ଗଲେ ନାହିଁ । ପଥ ଭ୍ରଷ୍ଟ ହେଲେ ନାହିଁ । ଯେତେବେଳେ ଦେଶ ସ୍ୱାଧୀନ ହେଲା, ସେ ପିଲାମାନେ ତା'ର କର୍ଣ୍ଣଧାର ହେଲେ । ଡିଗ୍ରୀ, ଡିପ୍ଲୋମା ନ ପାଇଲେ ମଧ ସେମାନେ ନ୍ୟୁନତା ଅନୁଭବ କଲେ ନାହିଁ । ଆଗେଇ ଚାଲିଲେ । କିଏ ଜାଣେ ଆଜି ମଧ କେହି ସେ ଆଦର୍ଶରେ ନ ବାହାରିବେ ବୋଲି !

## (୨୪)

ଥରେ ଜେଲ୍‌ରୁ ମୁକୁଳି ଆସିଲେ, ଆର ଥରକୁ କିପରି ଜେଲ୍ ଯିବେ, ଆଚାର୍ଯ୍ୟ ମହାଶୟଙ୍କ ମନ ଏଥିପାଇଁ ହାଇଁ ପାଇଁ ହେଉଥିଲା । ମହାଦେବ କ'ଣ କୁଆଡ଼େ ଏକୁଟିଆ ଯାଆନ୍ତି ? ତାଙ୍କ ସାଙ୍ଗରେ ନନ୍ଦୀ, ଭ୍ରୂକୁଟୀ, ଚଣ୍ଡୀ, ଚାମୁଣ୍ଡା ସମସ୍ତେ ଚାଲନ୍ତି । ଏଣୁ ଆଚାର୍ଯ୍ୟ ମହାଶୟ ଏକୁଟିଆ ଯିବା ବଦଳରେ ଆହୁରି ଅନେକ ଲୋକଙ୍କୁ ସାଙ୍ଗରେ ନେଇ ଜେଲ୍‌କୁ ଯାଆନ୍ତି ।

ହଜାରୀବାଗ ଜେଲ୍‌ଟି ଗୋଟିଏ ପାହାଡ଼ିଆ ଜାଗାରେ, ଅନ୍ୟ ସ୍ଥାନ ଅପେକ୍ଷା ବହୁତ ଉଚ୍ଚ । ଛୋଟ ସହରର ଗୋଟିଏ ପଟେ ଜେଲ୍‌ଟି । ତା'ରି ଭିତରେ ଲାଗ ଲାଗ ହୋଇ ଅନେକଗୁଡ଼ିଏ ସେଲ୍ ବା 'ଖୋପ ଭଳି କୋଠରୀ' ଥାଏ । ବିଶିଷ୍ଟ କଏଦୀମାନଙ୍କୁ ତାହାରି ଭିତରେ ଭର୍ତ୍ତି କରି ଦିଆଯାଉଥାଏ । ଜଣକା ଗୋଟିଏ ସେଲ୍ ।

ସେଠି ଭାରି ଶୀତ ପଡ଼େ । ଅନ୍ୟ ସବୁଦିନେ ତ ରାତିରେ କମ୍ବଳ ଘୋଡ଼ି ହେବା ଦରକାର ପଡ଼େ । ତେବେ ଡିସେମ୍ବର କି ଜାନୁୟାରୀର ଶୀତକଥା କହିଲେ ନ ସରେ । ବାହାରେ ସତ୍ୟାଗ୍ରହୀମାନେ ଖଦଡ଼ ପିନ୍ଧୁଥାଆନ୍ତି । କିନ୍ତୁ ମହାତ୍ମା ଗାନ୍ଧୀଙ୍କର ନିର୍ଦ୍ଦେଶ ଥାଏ ଯେ, ଜେଲ୍‌ର କର୍ତ୍ତୃପକ୍ଷ ଯାହା ପିନ୍ଧିବାକୁ ଦେବେ, ସତ୍ୟାଗ୍ରହୀମାନେ ସେଥିରେ ଆପତ୍ତି ନ କରିବା ଉଚିତ୍ । ଏଣୁ କଏଦୀମାନଙ୍କୁ ହଜାରୀବାଗ ଜେଲରେ ଜଙ୍ଘିଆ ଓ ମୋଟା କମ୍ବଳରେ ତିଆରି ଲମ୍ବା କୋର୍ଟ ପିନ୍ଧିବାକୁ ଦିଆଯାଉ ଥାଏ । ଆଚାର୍ଯ୍ୟ ମହାଶୟ ପ୍ରଭୃତି ସମସ୍ତେ ସେଇଆ ପିନ୍ଧି ଥାଆନ୍ତି ।

ଦୈନିକ ରାତି ନ'ଟାରେ ସେଲ୍ ଦ୍ୱାର ବନ୍ଦ ହୁଏ । ପୁଣି ଖୋଲେ ସକାଳ ଛ'ଟାରେ । ମାତ୍ର ଆଚାର୍ଯ୍ୟ ମହାଶୟ ବିଛଣା ଛାଡ଼ନ୍ତି ରାତି ଦୁଇଟାରେ । ତା'ପରେ କ'ଣ କରନ୍ତେ ? ସେତେବେଳେ ଯାଇ ହେବ ପାଣିଟାଙ୍କି ପାଖକୁ ନା ପାଇଖାନା ବି ଯାଇହେବ ? ପାଖରେ ଜେଲ୍‌ରେ ପେଶା ଯାଇଥିବା ଖାଣ୍ଟି ରାଶିତେଲରୁ କିଛି ଥାଏ । ସେଇଥିରୁ ଅଧଛଟାଙ୍କିଏ ଖଣ୍ଡେ ଦେହସାରା ମାଲିସ୍ କରି ହୁଅନ୍ତି । ଶୀତ କମ୍ ଜଣାପଡ଼େ । ପୁଣି ମାଲିସ୍ କଲେ ଦେହ ଟିକିଏ ଅଧିକ ସତେଜ ହୁଏ ।

ଏମିତି ରାତି ପାହିଯାଏ । କୁଆ କହେ କା' କା' ।

ସକାଳୁ ଦୁଆର ଖୋଲା ହେବା ସାଙ୍ଗେ ସାଙ୍ଗେ ଟାଙ୍କିରେ ସେ ନିତ୍ୟକର୍ମ କରନ୍ତି । ପ୍ରାର୍ଥନା ହୁଏ । ପାଣି ତ ଆଗରୁ ଭରା ହୋଇଥାଏ । ଧରନ୍ତୁ ବାସୀ ପାଣି । ଡିସେମ୍ବର ମାସ, ଭୀଷଣ ଶୀତ । ଦେହ ଖାଲି କୋଲମାରି ଯାଉଛି । ପାଣି ହେମକାକର । ତେବେ ବି ବଡ଼ିସକାଳୁ ସେ ଗାଧୁଅନ୍ତି । ପାଟି ଖନି ମାରିଯାଏ । ଦାନ୍ତ ଟାକୁ ଟାକୁ ବାଜେ । ଦେହ, ବରଡ଼ା ପତ୍ର ପରି ଥରେ । ତଥାପି ସେ ଆଗୁଆ ଦୈନନ୍ଦିନର କାର୍ଯ୍ୟକ୍ରମକୁ ବଦଳାନ୍ତି ନାହିଁ ।

ଗାଧୋଇ ସାରିଲା ପରେ ପୂଜାପାଠ ଚାଲେ । ପ୍ରାର୍ଥନା ହୁଏ । ବାରଣ୍ଡାକୁ ଖରା ଆସେ । ସେ ଯାଇ ଖରାରେ ବସନ୍ତି । ସୂତାକଟା ଚାଲେ ।

କିଛିଦିନ ପରେ ବକୁଳ ବନର ନନ୍ଦବାବୁ (ଶ୍ରୀଯୁକ୍ତ ନନ୍ଦକିଶୋର ଦାସ) ଆସି ଯୁଟିଲେ । ଓଡ଼ିଶା ବାଲାଙ୍କୁ ଗୋଟିଏ ଆଡ଼େ ରଖିବାର କଥା । ଏଣୁ ଆଚାର୍ଯ୍ୟ ମହାଶୟଙ୍କ ପାଖକୁ ଲାଗି ନନ୍ଦବାବୁଙ୍କ ସେଲ୍‌ଟି ଥାଏ । ଦୁଇ ସେଲ୍ ମଝିରେ ଅଧାକାନ୍ଥି ଗୋଟିଏ ଟିଣରେ ତିଆରି । ଆର ଘରେ ଲଣ୍ଠନ ଜଳିଲେ ଏ ଘରେ ଆଲୁଅ ପଡ଼େ । ଆର ଘରେ ଶବ୍ଦ ହେଲେ ଏ ଘରେ ତା'ର ପ୍ରତିଧ୍ୱନି ହୁଏ । ଏଣୁ ଦୁଆର ସିନା କିଳା ହୁଏ । କିନ୍ତୁ ନନ୍ଦବାବୁ ଓ ଆଚାର୍ଯ୍ୟ ମହାଶୟଙ୍କ ଭିତରେ କଥାବାର୍ତ୍ତା ଚାଲେ ରାତିରେ ଅନେକବେଳ ପର୍ଯ୍ୟନ୍ତ ।

ଖାଲି କ'ଣ କଥାବାର୍ତ୍ତା ଚାଲେ ? ଉପନିଷଦ, ମହାଭାରତଠାରୁ ଆରମ୍ଭକରି ରୋମ ସାମ୍ରାଜ୍ୟର ଅଭ୍ୟୁତ୍‌ଥାନ ଓ ପତନ, ଇଟାଲୀର ବିପ୍ଲବୀ ନେତା ଗାଲିବଲ୍ଡିଙ୍କ ଜୀବନୀ, ନେପୋଲିୟନଙ୍କ ଜୀବନୀ(ଜଣେ ଫରାସୀ ଲେଖକଙ୍କ ଲେଖାର ଇଂରାଜୀ ଅନୁବାଦ) ପ୍ରଭୃତି ଅନେକ ବଡ଼ ବଡ଼ ବହି ପଢ଼ା ଚାଲେ । ନନ୍ଦବାବୁଙ୍କ ପଢ଼ିବାର ଉଚ୍ଚାରଣଗୁଡ଼ା ଭାରି ସ୍ୱଷ୍ଟ । ଏଣୁ ଆଚାର୍ଯ୍ୟ ମହାଶୟଙ୍କୁ ଶୁଣିବାକୁ ଭଲ ଲାଗେ । ଦୁଇଜଣଙ୍କ ମଧ୍ୟରୁ କେହି ଜଣେ ନିଦେଇ ନ ଆସିଲେ ରାତିରେ ପଢ଼ିବା ବନ୍ଦ ହୁଏନା ।

ସକାଳୁ ପୁଣି କବାଟ ଫିଟେ । କାମ ସରେ ଆଚାର୍ଯ୍ୟ ମହାଶୟଙ୍କର । ପୁରୁଣା ବନ୍ଧୁ ନନ୍ଦକିଶୋର ଦାସଙ୍କର ଚାହା ପିଇବାର ଅଭ୍ୟାସ ଥାଏ । ଏଣୁ ତାଙ୍କ ପାଇଁ ଚାହା ତିଆରି ହୁଏ । ସେ ନିଜେ ବି ଟିକିଏ ଚାହା ପିଅନ୍ତି । ସେତେବେଳକୁ ବାରଣ୍ଡାକୁ ଖରା ଆସି ସାରିଥାଏ । ଆଚାର୍ଯ୍ୟ ମହାଶୟ ଚରଖା ଧରି ହାଜର ହୋଇଯାଇ ଥାଆନ୍ତି ।

ନନ୍ଦବାବୁ ପଢୁଥିଲାବେଳେ ଆଚାର୍ଯ୍ୟ ମହାଶୟଙ୍କର କାନ ଓ ହାତ ଉଭୟ କାମରେ ଲାଗିଥାଏ । ମନ କିନ୍ତୁ ଦୁଇଫାଳ ହୋଇ ନଥାଏ । ଏକା ସଙ୍ଗେ ଦୁଇଟି କାର୍ଯ୍ୟ କରି ଚାଲିଥାଏ, ଶୁଣୁଥାଏ ଓ ଟାଣୁଥାଏ ।

ଜେଲ୍‌ରେ ଲାଇବ୍ରେରୀ ଥାଏ । କିନ୍ତୁ ସବୁ ରକମର ବହି ସେଠାକୁ କାହିଁକି ଆସିବ ? ଜେଲରଙ୍କ ବିବେଚନାରେ ଯେଉଁ ବହିଗୁଡ଼ିକ ଭଲ ବହି, ସେହିଗୁଡ଼ିକୁ ସେ ଅଣାଇଥାଆନ୍ତି । ସବୁ ଜେଲର ଯେ ଲାଇବ୍ରେରୀକୁ ବହି ଆସିବାର ପକ୍ଷପାତୀ, ତାହା ମଧ୍ୟ ନୁହେଁ । ତେଣୁ ଆଚାର୍ଯ୍ୟ ମହାଶୟ ପ୍ରଭୃତି ଜେଲ୍‌ର ଲାଇବ୍ରେରୀରୁ ବେଶୀ କିଛି ସାହାଯ୍ୟ ପାଇପାରନ୍ତି ନାହିଁ । ଜେଲ୍ ଯିବାଲାଗି ପ୍ରସ୍ତୁତ

ହୋଇ ଆଗରୁ ବହି ପତ୍ର ସାଙ୍ଗରେ ଧରି ନେଇଯାଇ ଥାଆନ୍ତି ସେଠା ଦିନତକ କାଟିବା ପାଇଁ । ଯଦି ସନ୍ଦେହ ହୁଏ, ତେବେ ଜେଲର ଓ ସୁପରିଟେଣ୍ଡେଣ୍ଟ ବହିକୁ ଭିତରକୁ ଛାଡ଼ନ୍ତି ନାହିଁ । ତାହା ଅଫିସରେ ପଡ଼ି ରହେ ।

ଏଇମିତି ଗୋଟିଏ ବହି – 'ଭାରତରେ ବ୍ରିଟିଶ ଶାସନର ଉଦୟ ଓ ପୂର୍ଣ୍ଣତା ।' କର୍ତ୍ତୃପକ୍ଷ କ'ଣ ଜାଣିଥିଲେ ଯେ, ଏଡ଼େ ମାରାତ୍ମକ ବହି ଏ ! ଥମ୍ପସନ୍ ଏବଂ ଗ୍ୟାରେଟ୍ ସାହେବଙ୍କ ଲେଖା । ମାତ୍ର ଇଂରେଜ ଶାସନର ନଗ୍ନଚିତ୍ର ସେଥିରେ ଦିଆହୋଇଥାଏ । ସେଥିରେ ଗୋଟିଏ ବାକ୍ୟ ଥିଲା 'ସିପାହୀ ବିଦ୍ରୋହ' ବିଷୟରେ – ''ପ୍ରତ୍ୟେକଟି ଭାରତୀୟ, ଯେ କି ବ୍ରିଟିଶମାନଙ୍କ ପାଇଁ ଲଢୁ ନ ଥିଲା, ସେ ନିଜର ସ୍ତ୍ରୀଲୋକ ଏବଂ ଶିଶୁମାନଙ୍କୁ ମରାଉ ଥିଲା ।''

ଏହି ବହି ଆଚାର୍ଯ୍ୟ ମହାଶୟଙ୍କ ପରି ବିପ୍ଳବୀ ପାଠକମାନଙ୍କୁ ବହୁ ପରିମାଣରେ ପ୍ରଭାବିତ କରିଥିଲା । ହଜାରୀବାଗ ଜେଲ୍‌ରେ ଥାଇ ଆଚାର୍ଯ୍ୟ ମହାଶୟ ଓଡ଼ିଆରେ ଭଗବଦ୍ ଗୀତାର ସରଳାର୍ଥ ଲେଖିଥିଲେ ।

## (୨୪)

ବର୍ତ୍ତମାନ ଓଡ଼ିଶାର ସାଧାରଣ ସେବା କ୍ଷେତ୍ରରେ ଯେଉଁ କେତେଜଣ ପୁରୁଣା ଲୋକ ଦେଖା ଯାଆନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀ ଈଶ୍ୱର ଲାଲ ବ୍ୟାସ ଅନ୍ୟତମ । ଆଚାର୍ଯ୍ୟ ମହାଶୟ ପ୍ରଭୃତି ଯେତେବେଳେ ଜେଲ୍ ଯିବା, ଆଇନ୍ ଅମାନ୍ୟ କରିବା ପ୍ରଭୃତି କାର୍ଯ୍ୟରେ ବ୍ୟସ୍ତ ଥିଲେ, ସେତିକିବେଳେ ସେ ଓଡ଼ିଶା ଆସିଥିଲେ । ମୂଳରୁ ତାଙ୍କର ମଧ୍ୟ ଉଦ୍ଦେଶ୍ୟ ଥିଲା ଜେଲ୍ ଯିବା ପାଇଁ । କାରଣ ଇଂରେଜ ସରକାରର ଜୁଲମ ସେତେବେଳେ ଭାରି ଟାଣ ଥିଲା । ଯେଉଁମାନେ କିଛି ବୀରତ୍ୱ ଜଣାଇବାକୁ ଚାହାନ୍ତି, ସେମାନଙ୍କର ସବୁବେଳେ ଟାଣ ଜିନିଷକୁ ସାମନା କରିବାର ଇଚ୍ଛା ହିଁ ଥାଏ । ଏଣୁ ଈଶ୍ୱର ଲାଲ ଏକ ଲୁଗା ମିଲ୍‌ର ମ୍ୟାନେଜର ପଦଛାଡ଼ି ସ୍ୱାଧୀନତା ପାଇଁ ଜେଲ୍ ଯିବାକୁ ମନ କଲେ । ଏ ହେଉଛି କଲିକତାର କଥା ।

ସେତେବେଳେ କଲିକତାରେ ଆଉ ଜଣେ ଗଦି ମାଲିକ ଥିଲେ । ତାଙ୍କ ନାମ ଶ୍ରୀ ଜୀବରାମଜୀ କଲ୍ୟାଣଜୀ । କଲ୍ୟାଣଜୀଙ୍କର ବହୁତ ପଇସା ଥିଲା । ମାତ୍ର ଗରୀବ ଲୋକଙ୍କ ଲାଗି ତାଙ୍କ ମନରେ ଦରଦ ଥିଲା ଆହୁରି ବେଶୀ । ଗାନ୍ଧୀଜୀ ଯେତେବେଳେ ଏ ଦେଶର ଗରିବଙ୍କ ପାଇଁ ଗନ୍ତାଘର ଖୋଲିଦେବାର ଆହ୍ୱାନ କଲେ, ଧନପତି କଲ୍ୟାଣଜୀଙ୍କୁ ତାହା ପ୍ରଭାବିତ କଲା । ଶେଷରେ ଓଡ଼ିଶା ଭଳି ଏକ ଗରିବତମ ଅଞ୍ଚଳକୁ ସାହାଯ୍ୟ କରିବା ପାଇଁ, ସେଠାରେ କିଛି କାର୍ଯ୍ୟ କରିବାକୁ ସେ ଠିକ୍ କଲେ । ଦେଶସାରା ତ ଗରିବ । ହାତ ଗଣତା, ଅଳ୍ପ କେଇଜଣ ହୁଏତ ପଇସା ବାଲା ଲୋକ ଥିଲେ । ସେମାନଙ୍କୁ କି କାମ ଦିଆଯାଇ ପାରେ ? ଶେଷରେ ଏଠାର ଲୋକମାନଙ୍କୁ ରୋଜଗାରର ପନ୍ଥା ସ୍ୱରୂପ ସୂତାକଟା ଶିଖାଇବା ଠିକ୍ ହେଲା । କଲ୍ୟାଣଜୀଙ୍କ ପଇସାରେ ଅରଟ, ଭିଣା ଆଦି କିଣା ହୋଇ ଗାଁ ଗାଁରେ କାମ ଚାଲିଲା ।

ଈଶ୍ୱର ଲାଲଙ୍କ ଜଣେ ବନ୍ଧୁ କଲ୍ୟାଣଜୀଙ୍କ ଗଦିରେ ମ୍ୟାନେଜର ଥିଲେ । ସେ ପରାମର୍ଶ

ଦେଲେ ଯେ, ''ତୁମେ ଜେଲ୍ ଯିବ କ'ଣ ? ଥରେ କଲ୍ୟାଣଜୀଙ୍କର ମତାମତ ଏ ବିଷୟରେ ନିଅ ।'' ସେତେବେଳକୁ ଭଦ୍ରକରେ ଆସି କଲ୍ୟାଣଜୀ ସସ୍ତ୍ରୀକ ରହୁଥାଆନ୍ତି । ଈଶ୍ୱର ଲାଲ ତାଙ୍କରି ଠାକୁ ଆସିଲେ । ତାଙ୍କୁ ଜେଲ ଯିବା ସମ୍ପର୍କରେ ପଚାରିବେ କ'ଣ ଓଲଟି ଧାରଣା ହେଲା ଯେ, ଗରିବ ଲୋକଙ୍କୁ ମତେଇ ଦେଇ ଜେଲ୍ ଭିତରକୁ ନିଆଯାଇ ପାରେ । ମାତ୍ର ସେମାନଙ୍କ କୁଟୁମ୍ବଙ୍କୁ ଚଳାଇବା ପାଇଁ, ଦେଶରେ ପୂରି ରହିଥିବା ଭୋକ, ବେକାରୀ ଆଦିକୁ ଦୂର କରିବା ଲାଗି ସେମାନଙ୍କୁ କିଛି ଧନ୍ଦା ଯୋଗାଇବାକୁ ପଡ଼ିବ । ଏଣୁ ସ୍ୱାଧୀନତାର କଥା ଶୁଣିବା ସଙ୍ଗେ ଲୋକେ ନିଜ ଗୋଡ଼ରେ ଠିଆ ହେବାକୁ ଶିଖିବା ଉଚିତ୍ । କଲ୍ୟାଣଜୀଙ୍କ ପରାମର୍ଶକ୍ରମେ ସେ ଗୋଟିଏ ଗାଁରେ ଯାଇ ରହିଲେ । ସେଠାରେ ସୂତାକଟା, ଲୁଗାବୁଣା କାମ ପ୍ରଭୃତି ଶିଖାଇଲେ । ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, ଗ୍ରାମ ସଫେଇ ଆଦି ଗାନ୍ଧୀଜୀଙ୍କର ଗଠନ ମୂଳକ କାର୍ଯ୍ୟର ପ୍ରଚାର ହେଲା । ଯେତେବେଳେ ଆଚାର୍ଯ୍ୟ ମହାଶୟ କି ଗୋପବାବୁ ହେରିକା ଲୋକଙ୍କୁ ଲଢ଼ିବା ପାଇଁ ପ୍ରବର୍ତ୍ତାଉ ଥିଲେ, ସେତେବେଳେ ଈଶ୍ୱରଲାଲ ଏବଂ କଲ୍ୟାଣଜୀଙ୍କ କାମ ଲୋକଙ୍କ ଭିତରେ ଆତ୍ମବିଶ୍ୱାସ ବଢ଼ଉ ଥିଲା । (ଏ ସମ୍ପର୍କରେ ଲେଖକଙ୍କର ଆଉ ଏକ ପୁସ୍ତକ 'ଓଡ଼ିଶାରେ ବ୍ୟାସଜୀ ' ଦ୍ରଷ୍ଟବ୍ୟ)

ସେତେବେଳକୁ ହଜାରିବାଗ ଜେଲଥାଏ ଆନ୍ଦୋଳନକାରୀ ଓଡ଼ିଆମାନଙ୍କର ବିଶ୍ରାମ ସ୍ଥଳ । ଗାଁ'ରେ ରହିଲେ ସିନା କେଉଁଠି ପିକେଟିଂ କରି, ପତାକା ଧରି ପୋଲିସଙ୍କ ଆଖିରେ ଧୂଳି ପକାଇବାକୁ ହୁଏ । ସବୁବେଳେ ଆଶଙ୍କା ଓ ଉପାସ ଥାଏ ସତ୍ୟାଗ୍ରହୀର ସାଥୀ । ମାତ୍ର ଥରେ ଜେଲ୍ ଚାଲିଗଲେ ତେଣିକି ଆଉ ଲୁଚିଛପି ରହିବାର କୌଣସି ଭୟ ନାହିଁ । ସେଠି ଥିବେ ଆଚାର୍ଯ୍ୟ ମହାଶୟ, ପ୍ରାଣକୃଷ୍ଣ ପଢ଼ିଆରୀ, ଗୋପବାବୁ କି ଲିଙ୍ଗରାଜ ବାବୁଙ୍କ ଭଳି ପୋଖତ ପୁରୁଣା ଲୋକ । ସେମାନଙ୍କ ସାହଚର୍ଯ୍ୟ ଓଲଟି ପ୍ରେରଣା ଦେବ ସିନା ନିରାଶ କରିବ ନାହିଁ । ତା' ସାଙ୍ଗକୁ ପୁଣି ବ୍ୟବସ୍ଥିତ ଜୀବନ । ଠିକ୍ ସମୟରେ ଖାଇବା, ଶୋଇବା, କାମ କରିବା ପ୍ରଭୃତି । ତା ସାଙ୍ଗକୁ ଆହୁରି ବ୍ୟବସ୍ଥିତ କରି ଦିଏ ଆଚାର୍ଯ୍ୟ ମହାଶୟ କିମ୍ବା ଗୋପବାବୁଙ୍କ କାର୍ଯ୍ୟ କଳାପ । ବଡ଼ି ସକାଳୁ କାମଦାମ ସାରି ଆଚାର୍ଯ୍ୟ ମହାଶୟ ସୂତାକାଟି ବସିଲେ କିମ୍ବା ଗୋପବାବୁ ବଗିଚାକୁ ବାହାରିଲେ, ଅନ୍ୟମାନେ ଚୂପଚାପ ବସି ରହିବେ କେମିତି ? ଅନ୍ତତଃ କିଛି ନା କିଛି କାମ ତ କରିବାକୁ ହେବ ! ନ ହେଲେ ନିଜ ମନ କ'ଣ କହିବ ?

ହୁଏତ କେତେକଙ୍କ ପାଇଁ ତାହା ଜେଲ୍ ଥିଲା । ମାତ୍ର ଆଚାର୍ଯ୍ୟ ମହାଶୟଙ୍କ ଲାଗି ସେ ଥିଲା ସାଧନାର କ୍ଷେତ୍ର । ମନ ତାଙ୍କର ବହୁ ପୂର୍ବରୁ ସ୍ୱାଧୀନ ହୋଇ ସାରିଥିଲା । ମନ ଯାହାର ସ୍ୱାଧୀନ, ତାକୁ ଦୁନିଆର କେଉଁ ଶକ୍ତି ଲୁହା କବାଟର ଘେର ଭିତରେ ରଖି ବନ୍ଦ କରି ପାରେ ? ଇଟା ପଥରର ଜେଲ କାନ୍ଥ ଚାରିଟାକୁ ପଚାରେ ବା କିଏ ?

ଏଣୁ ଗାଁ ଗହଳିରେ କିମ୍ବା 'ସ୍ୱରାଜ ଆଶ୍ରମ' ପିଣ୍ଡାରେ ଯେମିତି ତାଙ୍କର ସୂତାକଟା, ଗୀତାପାଠ, ପ୍ରାର୍ଥନା ଆଦି ଚାଲୁ ଥାଆନ୍ତା, ହଜାରୀବାଗ ଜେଲ୍‌ରେ ମଧ୍ୟ ଠିକ୍ ସେମିତି ଚାଲୁଥିଲା । ତା' ସାଙ୍ଗକୁ ଦୁନିଆର ନାନା କଥା ଉପରେ ଆଲୋଚନା କରିବା ପାଇଁ ଆଲୋଚକ ବନ୍ଧୁମାନଙ୍କ ସଂଖ୍ୟା ତ ସେଠି କମ୍ ନଥିଲା !!

(୨୬)

ଆଚାର୍ଯ୍ୟ ମହାଶୟଙ୍କର ଦେଶକୁ ସ୍ୱାଧୀନ କରିବା ଲାଗି ବ୍ୟାକୁଳତା ଯେପରି ଥାଏ, ସେହିପରି ଗାନ୍ଧୀଜୀଙ୍କର କାର୍ଯ୍ୟକ୍ରମମାନ କିପରି ଠିକ୍ ଠିକ୍ କାର୍ଯ୍ୟରେ ଲାଗିବ, ସେଥିପାଇଁ ଯତ୍ନ ମଧ୍ୟ ଥାଏ । ଏଣୁ ହରିଜନ ସାହିରେ କେତେବେଳେ ତାଙ୍କୁ ପଖାଳ ଖାଇବାକୁ ହୁଏତ କେତେବେଳେ ଝିଅଙ୍କ ମେଳରେ ସୂତା କାଟିବାକୁ ପଡ଼େ । ଗୁହାଳି ବନ୍ଧରେ ଚାନ୍ଦା ମାଗିବାକୁ ଆଚାର୍ଯ୍ୟ ମହାଶୟ ବରିରୁ କେତେବେଳେ ଶୂନଗାଡ଼ି ଚଢ଼ି ଦଉଡ଼ନ୍ତି ତ ଗାଆଁ ଗାଆଁରେ ପ୍ରତ୍ୟେକଙ୍କ ବାଡ଼ିରେ କେମିତି ଖନ୍ଦା ପାଇଖାନା ଖୋଳା ହେବ, ଏଥିଲାଗି ଲାଗନ୍ତି । କେତେବେଳେ ଗାଆଁ ଟୋକାଙ୍କୁ ସାଙ୍ଗରେ ଧରି ରାସ୍ତା ସଫା କରନ୍ତି । ନିଜର ତ ଘର କିମ୍ୱା ଅଞ୍ଚଳ ବୋଲି କିଛି ନାହିଁ !

ଓଡ଼ିଶାରେ 'ହରିଜନ ପଦଯାତ୍ରା'ରେ ଆସି ଗାନ୍ଧୀଜୀ ଏଠାକାର କର୍ମୀମାନଙ୍କୁ ଗୋଟିଏ ଗୋଟିଏ ଅଞ୍ଚଳ ବାଛିନେଇ ନିଜର ପ୍ରୟୋଗ ଚଳେଇବା ପାଇଁ ପରାମର୍ଶ ଦେଇଥିଲେ । ସେହି ଅନୁସାରେ ଗୋପବାବୁ ଯାଇଥିଲେ ଯାଜପୁରର ବରିକୁ । ହୋତା ମହାଶୟଙ୍କର ଆସ୍ଥାନ ଜମିଥିଲା ପୁରୀ ଜିଲାର ବେରବୋଇ ଗାଁରେ ।

୧୯୩୬ ମସିହା ଅପ୍ରେଲ ମାସ ପହିଲା ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ତା' ପୂର୍ବରୁ ବିହାର ସଙ୍ଗେ ମିଶିକରି ଥିଲା । ଖାଲି ବିହାର କାହିଁକି, ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗଳାରେ ମଧ୍ୟ କେତେକ ଅଞ୍ଚଳ ରହିଥିଲା । ସେ ସବୁ ଅଞ୍ଚଳର ଲୋକେ ଓଡ଼ିଆ କହୁଥିଲେ । ସେମାନଙ୍କର ଚଳଣି ଓ ରୀତି-ନୀତି ଥିଲା ପକ୍କା ଓଡ଼ିଆ । ମାତ୍ର ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିଥିଲେ । ସ୍ୱର୍ଗତ ମଧୁବାବୁଙ୍କ ଅମଳରୁ ଚେଷ୍ଟା ଚଳି ଆସିଥିଲା ଯେ ବଚ୍ଛିନ୍ନ ଓଡ଼ିଆ ଲୋକେ କେମିତି ଏକତ୍ର ହେବେ । ସେଇଥି ପାଇଁ ତାଙ୍କ ଅମଳରେ ଭାରି ଜୋରସୋରରେ କାମ ଚାଲିଥିଲା । ମଧୁବାବୁଙ୍କ ନେତୃତ୍ୱରେ ସେତେବେଳେ ଓଡ଼ିଆ ଆନ୍ଦୋଳନରେ ଅନେକ ଲୋକ ପ୍ରଭାବିତ ହୋଇଥିଲେ । କିନ୍ତୁ ମଧୁବାବୁଙ୍କ ଜୀବିତକାଳରେ ଆସିଲା ଗାନ୍ଧୀଜୀଙ୍କ ଡାକରା । ପୁଣି ଦାସେ ଆପଣେ ବାହାରିଲେ ତାଙ୍କ କାମରେ !

ଦାସେ ଆପଣେଙ୍କର ଅନେକ ସହକର୍ମୀ ଥିଲେ, ଯେଉଁମାନେ କି ସ୍ୱାଧୀନତାର ଆନ୍ଦୋଳନ ଅପେକ୍ଷା ଓଡ଼ିଆ ଆନ୍ଦୋଳନକୁ ବେଶି ବଡ଼ ବୋଲି ଭାବୁଥିଲେ । ଏହାର ଖୁବ୍ ଟାଣୁଆ ଆଲୋଚନା ହେଉଥିଲା ଏବଂ ଶେଷରେ ସମସ୍ତଙ୍କୁ ମନମୁତାବକ କାମରେ ଦାସେ ଆପଣେ ଠିକ୍‌ଭାବେ ଲଗାଇ ଦେଇ ପାରୁଥିଲେ । ଏଣୁ ମତଭେଦଟା ବାହାରକୁ ଜଣାପଡୁ ନଥିଲା । ଦାସେ ଆପଣେଙ୍କ ଚାଲିଯିବା ପରେ ଆଚାର୍ଯ୍ୟ ମହାଶୟଙ୍କଠାରୁ ଅନେକ ସହକର୍ମୀ ଦୂରେଇ ଗଲେ — ସେ କଥା ପୂର୍ବରୁ କୁହାଯାଇଛି ।

ତାହା ବୋଲି ସେମାନଙ୍କ ମଧ୍ୟରେ କ୍ଷଣିକ ଲାଗି ଯେ ଅନ୍ୟ ପ୍ରତି ଖରାପ ଭାବ ଥିଲା ବା କେହି କାହାରିକୁ ଘୃଣା କିମ୍ୱା ଅଶ୍ରଦ୍ଧା କରୁଥିଲେ — ଏ କଥା ନୁହେଁ । ବୟସ ଭେଦରେ ପ୍ରତ୍ୟେକ ଅପରକୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଜଣେ ଅନ୍ୟଜଣର ସୁଖଦୁଃଖରେ ଭାଗୀ ହେଉଥିଲେ । କିନ୍ତୁ ପ୍ରତ୍ୟେକଙ୍କର ବିଚାର ଥିଲା ସ୍ୱତନ୍ତ୍ର ।

ବନ୍ଧୁମାନଙ୍କ ଭିତରୁ ଅନେକ ଛକାପଞ୍ଝା ରାଜନୀତିକୁ ପସନ୍ଦ କରୁଥିଲେ । ମାତ୍ର ଏ ସବୁ କାମ ଆଚାର୍ଯ୍ୟ ମହାଶୟଙ୍କୁ ପୋଷାଇଲା ନାହିଁ । ଏଣୁ ନିଜେ ସିଧା ସଳଖ ଏ ସବୁ ପେଞ୍ଚ ପାଞ୍ଚରୁ ଅଲଗା ରହି ସେ ଗାଆଁର ସେବା କଲେ । କିନ୍ତୁ ଏ ପାଖରେ, ତାଙ୍କୁ ଛାଡ଼ି ଦେଇ ଯେଉଁମାନେ ଛକାପଞ୍ଝା ରାଜନୀତି କରୁଥିଲେ ଅର୍ଥାତ ପରସ୍ପର ଭିତରେ ଭୂଷା ଭୂଷି ହେଉଥିଲେ, ସେମାନଙ୍କ କଜିଆ ତୁଟାଉ ଥିଲେ ଆଚାର୍ଯ୍ୟ ମହାଶୟ । ଓଡ଼ିଶା କଂଗ୍ରେସ ବାଲାଙ୍କ ନିଜ ଭିତରର କଜିଆ ଭାଙ୍ଗିବା ଲାଗି ଟ୍ରିବ୍ୟୁନାଲ(ନିଷ୍ପତ୍ତିକାରୀ କମିଟି) ବସାଯାଇଥିଲା । ସେଥିରେ ଆଚାର୍ଯ୍ୟ ମହଶୟ ଏବଂ ଗୋପବାବୁ ସଦସ୍ୟ ଥିଲେ । ଖାଲି କ'ଣ ସେତିକି ?

ଥରେ ପ୍ରାଦେଶିକ କଂଗ୍ରେସର ସଭାପତି ପଦ କାହାକୁ ଦିଆଯିବ ଏଥିପାଇଁ ତୁମୂଳ କନ୍ଦଳ ଲାଗିଲା ପ୍ରାଦେଶିକ କଂଗ୍ରେସ କମିଟିର ବୈଠକରେ । ବାହାରେ ତ ପୋଲିସ ଧରି ନେବେ । ଏଣୁ ନୟାସଡ଼କର ସତ୍ୟନାରାୟଣ ମନ୍ଦିର ଭିତରେ ଆଲୋଚନାର ଧୂମ୍ ଉଡୁଥାଏ । କାରଣ ମନ୍ଦିର ଭିତରକୁ ପୋଲିସ ପଶିବା ମନା ।

କନ୍ଦଳର କାରଣ ହେଲା ଯେ, ଓଡ଼ିଶାର କଂଗ୍ରେସ କର୍ମୀମାନେ ଆଗାମୀ କଂଗ୍ରେସ ସମ୍ମିଳନୀଟିକୁ ଓଡ଼ିଶାରେ କରିବା ପାଇଁ ଆୟୋଜନ କରୁଥାଆନ୍ତି । ଏହା କଟକରେ ହେବ କି ପୁରୀରେ ହେବ – ଏଥିପାଇଁ ଟଣା ଓଟରା ଚାଲିଥାଏ । ଉଭୟ ପକ୍ଷର ଧୁରନ୍ଧର ବ୍ୟକ୍ତିମାନେ ନିଜ ନିଜ ସପକ୍ଷରେ ଯୁକ୍ତି ଓ ତଥ୍ୟ ଯୋଗାଉ ଥାଆନ୍ତି । କୌଣସି ମୀମାଂସା ହୋଇପାରୁ ନଥାଏ । ସମ୍ମିଳନୀ ପାଇଁ ପ୍ରାଦେଶିକ ସଭାପତିଙ୍କର ସହଯୋଗ ଦରକାର । ଲୋକନାଥ ମିଶ୍ର ପ୍ରମୁଖ ପୁରୀର ନୀଳକଣ୍ଠ ଦାସଙ୍କ ନାମ ସଭାପତି ପଦ ଲାଗି ପ୍ରସ୍ତାବ କଲା ବେଳକୁ କଟକ ବାଲା ବିଚିତ୍ରାନନ୍ଦ ଦାସ ପ୍ରମୁଖ ଗୋପବନ୍ଧୁ ଚୌଧୁରୀଙ୍କ ନାଆଁ ସଭାପତି ପଦପାଇଁ ଉଠାଉ ଥାଆନ୍ତି । ଉଭୟେ ଉପଯୁକ୍ତ ଲୋକ । ଜଣେ ଅନର୍ଗଳ ବାଗ୍ମୀ ତ ଅନ୍ୟ ଜଣେ ନୀରବ ସାଧକ । କେହି କାହାକୁ କମ୍ ନୁହନ୍ତି । ମାତ୍ର ଏ ଅଡୁଆ ହଟିବ କିପରି ? ଶେଷରେ ଭାବି ଭାବି କେତେଜଣ ବୁଦ୍ଧିମାନ୍ ବନ୍ଧୁ ଯାଇ ଆଚାର୍ଯ୍ୟ ମହାଶୟଙ୍କ ପାଖେ ଯୁଟିଲେ । କାରଣ ଏ ଅଡୁଆ ତୁଟାଇବା ଲାଗି ଏକମାତ୍ର ଯୋଗ୍ୟ ଲୋକ ଥିଲେ ସେ । ଶେଷରେ ବହୁକଷ୍ଟରେ ଆଚାର୍ଯ୍ୟ ମହାଶୟଙ୍କୁ ଏଥିପାଇଁ ରାଜି ହେବାକୁ ହେଲା । ସଭାପତି ପଦପାଇଁ ନୂତନ କରି ଯେତେବେଳେ ଆଚାର୍ଯ୍ୟ ହରିହରଙ୍କ ନାମ ପ୍ରସ୍ତାବ ଆସିଲା, କେହି ଉଁ କି ଚୁଁ ହେଲେ ନାହିଁ । ନିର୍ଦ୍ୱନ୍ଦରେ ନିର୍ବାଚିତ ସଭାପତି ଆଚାର୍ଯ୍ୟ ମହାଶୟ, ପଣ୍ଡିତ ନୀଳକଣ୍ଠ ଏବଂ ଗୋପବାବୁଙ୍କୁ ପ୍ରାଦେଶିକ କଂଗ୍ରେସ ଦଳର ଯୁଗ୍ମ ସମ୍ପାଦକ କଲେ ।

## (୨୭)

ଭାରତ ଗୋଟିଏ ବିଚିତ୍ର ଦେଶ । ବଣ, ପାହାଡ଼, ନଈ, ନାଳ, ସମୁଦ୍ର ଆଉ ଫସଲ କିଆରିରେ ଏଠି ଯେମିତି ବିଚିତ୍ରତା ଦେଖିବାକୁ ମିଳେ, ସେଇମିତି ଏଠାକାର ଶାସନ ବ୍ୟବସ୍ଥାରେ ସେତେବେଳେ ବିଚିତ୍ରତା ଥିଲା । ମହୀଶୂର, ହାଇଦ୍ରାବାଦ, ଜୟପୁର ପ୍ରଭୃତି ଦେଶୀୟରାଜ୍ୟ, କନିକା କିମ୍ବା ରାମଗଡ଼ ଭଳି ଜମିଦାରୀମାନଙ୍କରେ ରାଜା ଆଉ ଜମିଦାରମାନଙ୍କର ମନଇଚ୍ଛା

କାରବାର ଚାଲିଥିଲା । ଉପରେ ବିଦେଶୀ ସରକାର । ତା' ତଳକୁ ରାଜା ଆଉ ଜମିଦାର । ଏ ଉଭୟଙ୍କ ଦାଉରେ ବିଚରା ଗରିବ ଲୋକେ ପେଶି ହୋଇ ଯାଉଥିଲେ । ତେଣୁ ଅନେକ ଲୋକ ଭାବୁଥିଲେ ଯେ, ଭାରତର ସ୍ୱାଧୀନତା ସାଙ୍ଗକୁ ଦେଶୀୟ ରାଜ୍ୟମାନଙ୍କରେ ଥିବା ଏ ଦେଶର ଲକ୍ଷ ଲକ୍ଷ ମଳିମୁଣ୍ଡିଆ ଖଟିଖିଆ ଲୋକଙ୍କର ମୁକ୍ତି ଦରକାର । ଏଥିପାଇଁ ରାଜୁଡ଼ା ଶାସନ ଭିତରେ ବି ଭାରତର ଚାରିଆଡ଼େ ଆନ୍ଦୋଳନ ଚାଲିଥିଲା ।

ଭାରତର ସ୍ୱାଧୀନତା ଆନ୍ଦୋଳନ ନିଆଁ ଭିତରୁ ଯେଉଁ ଝୁଲଟି ଓଡ଼ିଶାରେ ଆସି ପଡ଼ିଲା, ଗଡ଼ଜାତ ଆନ୍ଦୋଳନ ଥିଲା ତା'ର ଏକ ଅଂଶ । କନିକା ଜମିଦାରୀରେ ଯେଉଁ ଅତ୍ୟାଚାର ହୋଇଥିଲା, ତା'ର ବିବରଣୀ ଗୁପ୍ତଭାବରେ ସଂଗ୍ରହ କରିବା ଲାଗି ଆଚାର୍ଯ୍ୟ ମହାଶୟ ନିଜେ ସେଠାକୁ ଯାଇଥିଲେ । ପଣ୍ଡିତ ଗୋପବନ୍ଧୁ ତ ଏଇ ଆନ୍ଦୋଳନରେ ଦୁଇବର୍ଷ ପାଇଁ ଜେଲ୍ ଯାଇଥିଲେ । କିନ୍ତୁ ଓଡ଼ିଶାର ଗଡ଼ଜାତ ଅତ୍ୟାଚାର ଢେଙ୍କାନାଳରେ ପ୍ରବଳ ରୂପ ଧରିଥିଲା । ଢେଙ୍କାନାଳ ପାଖକୁ ତାଳଚେରରେ ମଧ ରାଜାଙ୍କ ତରଫରୁ ନାନାରକମର ଅତ୍ୟାଚାର ହେଉଥିଲା । ଲୋକେ ସେସବୁ ସହି ସହି ଏପରି ନୟାନ୍ତ ହୋଇଗଲେ ଯେ ଶେଷକୁ ଆଉ ସେମାନେ ବରଦାସ୍ତ କରି ପାରିଲେ ନାହିଁ । ତାଳଚେରରୁ ଅତ୍ୟାଚାରିତ ଦଶହଜାରଠୁଁ ବେଶି ପ୍ରଜା ଘରଦୁଆର ଛାଡ଼ି ଅନୁଗୁଳ ଆଡ଼କୁ ପଳାଇ ଆସିଲେ । କାରଣ ଅନୁଗୁଳ ଗଡ଼ଜାତର ସୀମା ଭିତରେ ନଥିଲା । କୋଶଳା ବୋଲି ଗୋଟିଏ ଗାଁ । ସେହିଠାରେ ସେମାନଙ୍କର ରହିବା ବ୍ୟବସ୍ଥା କରାଗଲା । କୋଶଳା ଏବଂ ଆଖପାଖରେ ଲୋକେ ସେମାନଙ୍କର ଚର୍ଚ୍ଚା କଲେ । ଗାନ୍ଧୀଜୀଙ୍କ ପର୍ଯ୍ୟନ୍ତ ମଧ ଏ ଖବର ଯାଇଥିଲା ।

କାମ ନ କଲେ ଖାଇବାକୁ ମିଳିବ କେମିତି ? ଏଣୁ ଆଚାର୍ଯ୍ୟ ମହାଶୟ ଘରଛାଡ଼ି, ପଳାଇ ଆସିଥିବା ଲୋକଙ୍କୁ ଆଶ୍ୱାସନା ଦେବା ସାଂଗେ ସାଂଗେ ସେମାନଙ୍କୁ ସୂତାକଟା କାମର ଶିକ୍ଷା ଦିଆଇଥିଲେ । ଆନ୍ଦୋଳନ କରୁଥିବା ଆହୁରି ବହୁ ଉତ୍ସାହୀ କର୍ମୀ ଏ କାର୍ଯ୍ୟରେ ଲାଗି ପଡ଼ିଥିଲେ ।

ସେତେବେଳେ ଜାତୀୟ କଂଗ୍ରେସ ଥିଲା ମୁଖ୍ୟ ଲଢୁଆ ଅନୁଷ୍ଠାନ । ତା' ଭିତରୁ ଆହୁରି ପଞ୍ଚାଏ ଲୋକ ବାହାରିଲେ, ଯେଉଁମାନେ କହିଲେ- ଭାରତର ସ୍ୱାଧୀନତା ଅନ୍ଦୋଳନ ସହିତ ଲୋକଙ୍କ ଭୋକ ମାରିବା ଆନ୍ଦୋଳନ ବି କରିବାକୁ ହେବ । ଗରିବମାନଙ୍କ ତରଫରୁ ଧନୀମାନଙ୍କ ଉପରେ ଚାପ ପକାଇବାକୁ ହେବ । ଜାତୀୟ କଂଗ୍ରେସର ଅନେକେ ସେମାନଙ୍କର ଏହି ବିଚାରକୁ ସମର୍ଥନ କଲେ ନାହିଁ । ଫଳରେ ଜାତୀୟ କଂଗ୍ରେସରେ ଦୁଇଟି ଗୋଷ୍ଠୀ ଦେଖାଦେଲେ । ଜାତୀୟ କଂଗ୍ରେସ ଭିତରେ କଂଗ୍ରେସ ସମାଜବାଦୀ ଦଳ ମୁଣ୍ଡ ଟେକିଲା । ଓଡ଼ିଶାରେ ଏହି ଦଳର ପ୍ରଭାବ ଖୁବ୍ ବେଶି ଥିଲା । କାରଣ ଅନେକଗୁଡ଼ିଏ ଧୁରନ୍ଧର ଯୁବକ ଏଥିରେ ଥିଲେ । ଓଡ଼ିଶାରେ ଯେଉଁ ଗଡ଼ଜାତ ଆନ୍ଦୋଳନ ଚାଲିଥିଲା, ତା' ମୂଳରେ ଥିଲେ ସେହି ଯୁବକମାନେ ।

ପ୍ରାଦେଶିକ କଂଗ୍ରେସର କାର୍ଯ୍ୟକାରୀ ସମିତିକୁ ବିଭିନ୍ନ ଜିଲାରୁ ପ୍ରାର୍ଥୀମାନେ ନିର୍ବାଚିତ ହୋଇ ଆସୁଥିଲେ । ଏଇ ନିର୍ବାଚନରେ ଜାତୀୟ କଂଗ୍ରେସ ଓ କଂଗ୍ରେସ ସମାଜବାଦୀ ଭିତରେ ଲଢ଼େଇ

ଚାଲିଥିଲା । ୧୯୩୮ ମସିହାରେ ଆଚାର୍ଯ୍ୟ ମହାଶୟ ଏଇମିତି ଏକ 'ଲଢ଼େଇ'ରେ ପଡ଼ିଗଲେ ।

ସେ ଥିଲେ ଜାତୀୟ କଂଗ୍ରେସର ପ୍ରାର୍ଥୀ । ତାଙ୍କର ପ୍ରତିଦ୍ୱନ୍ଦୀ କଂଗ୍ରେସ ସମାଜବାଦୀମାନେ ତାଙ୍କୁ 'ଅକାର୍ଯ୍ୟ ହରିହର' ଭାବେ ଚିତ୍ରଣ କରି ବହୁ ଚେଷ୍ଟାରେ ହରାଇ ଦେଲେ । ମାତ୍ର ପରେ ଜଣାଗଲା ଯେ, ଆଚାର୍ଯ୍ୟ ମହାଶୟ ନିଜେ ସୁଦ୍ଧା ଜାଣି ନଥିଲେ ଯେ ସେ ପ୍ରତିଦ୍ୱନ୍ଦିତା କରୁଛନ୍ତି ।

ତାଙ୍କରି ପିଲେ ତାଙ୍କୁ ହରାଇ ଦେଲେ । କ'ଣ ତାଙ୍କ ପାଇଁ ଏ ଏକ ଗୌରବ ନୁହେଁ ? ଘଟଣାଟି ହେଉଛି ଏହିପରି –

ଆଚାର୍ଯ୍ୟ ହରିହର ଦାସଙ୍କର ପ୍ରତିଦ୍ୱନ୍ଦୀ ଥାଆନ୍ତି ତାଙ୍କର ପୂର୍ବତନ ଛାତ୍ର ଓ ନିମାପଡ଼ାର କର୍ମୀ ମୋହନ ଦାସ । କଂଗ୍ରେସର ଦଳେ ତରୁଣ କର୍ମୀ ସେତେବେଳେ କୃଷକ ସଭା ଓ କଂଗ୍ରେସ ସାମ୍ୟବାଦୀ ଗୋଷ୍ଠୀ ଗଢ଼ିଥାଆନ୍ତି । ଏଇ ଗୋଷ୍ଠୀ କଂଗ୍ରେସ ଦଳକୁ ସାମ୍ୟ ଦିଗରେ ଅଧିକ ପ୍ରଗତିଶୀଳ କରାଇବା ପାଇଁ ଚେଷ୍ଟା କରୁଥାଏ । ମୋହନ ଦାସ ଥାଆନ୍ତି ଏହି ଗୋଷ୍ଠୀର । ଆଚାର୍ଯ୍ୟ ହରିହରଙ୍କୁ ''ଅକାର୍ଯ୍ୟ ହରିହର'' ବୋଲି ଏଇ ଗୋଷ୍ଠୀ ଚିତ୍ରିତ କରୁଥାଏ ।

ସେଦିନ କଂଗ୍ରେସଦଳର କର୍ମୀମାନେ ଆସିଲେ ଭୋଟ ନେବା ପାଇଁ । ଭୋଟ ସ୍ଥାନରୁ କିଛି ଦୂରରେ କଂଗ୍ରେସ ସାମ୍ୟବାଦୀ ଗୋଷ୍ଠୀର ବୈଦ୍ୟନାଥ ରଥ ପ୍ରମୁଖ ସ୍ୱେଚ୍ଛା ସେବକମାନେ ସେମାନଙ୍କୁ କହି ଦିଅନ୍ତି ''ଆପଣ ତ ଡେରି କରି ଆସିଲେ । ଭୋଟ କାମ ସରିଗଲାଣି ।'' ଏଣେ ନିଜ ସପକ୍ଷ ଲୋକଙ୍କୁ ପଠେଇ ଦିଅନ୍ତି ଭୋଟ ଦେବାକୁ ।

## (୨୮)

୧୯୩୬ ମସିହାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବାରୁ ଏଥର ସୁବିଧା ହେଲା ଯେ, ଗାଁ ଗହଳିରେ ଆନ୍ଦୋଳନ କରି ଏତେ ବାଟ – ହଜାରୀବାଗ ଜେଲ୍‌କୁ ଯିବା ଦରକାର ପଡ଼ିଲା ନାହିଁ । ପ୍ରାଦେଶିକ କେନ୍ଦ୍ରୀୟ ଜେଲ ହେଲା ବରହମ୍ପୁର । ପୁଲିସବାଲା ସେହିଠାକୁ ଗାଁ ଗହଳିରେ ସରକାରଙ୍କ ବିରୋଧରେ ପ୍ରଚାର କରୁଥିବା କର୍ମୀମାନଙ୍କୁ ଧରି ନେଉଥିଲେ । ପିଲାମାନଙ୍କୁ କିମ୍ବା ଯେଉଁମାନେ ନୂଆକରି ସ୍ୱାଧୀନତାର ସିପାହୀ ହେଉଥିଲେ, ସେମାନଙ୍କୁ ବେଳେ ବେଳେ ମାଡ଼ ଚଢ଼ାଯାଉଥିଲା । କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କୁ କେବେ ମାଡ଼ ହୋଇନାହିଁ । କାରଣ ଯେଉଁ ପୁଲିସ କର୍ମଚାରୀ ତାଙ୍କୁ ଧରିନେବାକୁ ଆସୁଥିଲେ, ସେ ନିଜେ କିମ୍ବା ତାଙ୍କ ପରିବାର କୌଣସି ସୂତ୍ରରେ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ବ୍ୟକ୍ତିଗତ ଭାବେ ସଂପୃକ୍ତ ଥିବେ । ତା'ପରେ ଆଚାର୍ଯ୍ୟ ମହାଶୟଙ୍କ ଦେହରେ ଟିପ ବାଜିଲେ ଓଡ଼ିଶାର ଲୋକେ ବରଦାସ୍ତ କରି ଥାଆନ୍ତେଟି ! କଏଦୀଖାନାକୁ ନେବାପାଇଁ ହାତକଡ଼ି ବି ତାଙ୍କ ଲାଗି ଆବଶ୍ୟକ ହେଉ ନଥିଲା । ''ଆପଣ ବନ୍ଦୀ ହେଲେ'' – ବୋଲି ପୁଲିସ କାର୍ମଚାରୀ ଯେତେବେଳେ ଆସି କହି ଦେଉଥିଲେ, ଆଚାର୍ଯ୍ୟ ମହାଶୟ ତାଙ୍କ ସାଙ୍ଗରେ ଚାଲୁଥିଲେ । ମଲା ସାପକୁ କ'ଣ କେହି ବୁଦ୍ଧିମାନ ଲୋକ ମାଡ଼ ଦିଏ ? ମୂଳରୁ ତ ସେ ଜେଲ୍ ଯିବାକୁ ଫିକର କରିଥାଆନ୍ତି । ଏଣୁ 'କଏଦୀ କାଳେ ପଳେଇ ଯିବେ' – ଏ ଭୟ ପୁଲିସ ବାଲାଙ୍କର ନ ଥାଏ ।

କିଛିଦିନ ପରେ ଅବସ୍ଥା ବଦଳି ଗଲା । ଭାରତୀୟ ଲୋକଙ୍କୁ ସାମାନ୍ୟ ସ୍ୱାଧୀନତା ଦେବା ଉଦ୍ଦେଶ୍ୟରେ ଇଂରେଜ ସରକାର ଲୋକମତ ଚାହିଁଲେ । ସ୍ଥାନେ ସ୍ଥାନେ ନିଷ୍ଠାପର କର୍ମୀମାନେ ଇଂରେଜ ସରକାରଙ୍କ ତରଫରୁ ଲୋକମାନଙ୍କ ସହିତ ପ୍ରତିଯୋଗିତା କଲେ । ଅଧିକ ଲୋକଙ୍କ ସମର୍ଥନ ପାଇ ସେମାନେ ବ୍ୟବସ୍ଥା ସଭାକୁ ଆସିଲେ ।

ସେତେବେଳେ ବିଚରା ମାଡ଼ ଖାଇ, ଜୋରିମାନା ଦେଇ ତଳିତଳାନ୍ତ ହୋଇଯାଇଥିବା ନୀରବ କର୍ମୀମାନେ ନିର୍ବାଚନ ଯୁଦ୍ଧରେ ଲଢୁଥିଲେ । ଏଣୁ ସେ ଲୋକମାନଙ୍କର ପରିଚୟ, ସେମାନଙ୍କ କାର୍ଯ୍ୟର ବିବରଣୀ ଏବଂ ଉଦ୍ଦେଶ୍ୟ ତନ୍ନ ତନ୍ନ କରି ବୁଝେଇବା ଦରକାର ପଡୁଥିଲା । ଆଚାର୍ଯ୍ୟ ମହାଶୟଙ୍କ ଭଳି ସର୍ବଜନ ପରିଚିତ ଲୋକ ଏଥିରୁ ଅଲଗା ରହିପାରନ୍ତେ କେମିତି ?

ତାଙ୍କପରି ସେବକମାନଙ୍କ ଅକାତର ଚେଷ୍ଟା ଫଳରେ ଶେଷରେ ଭାରତୀୟ ଜାତୀୟ କଂଗ୍ରେସର ଜୟ ହେଲା । ବିଭିନ୍ନ ପ୍ରଦେଶରେ କଂଗ୍ରେସ ଲୋକେ ରାଜ୍ୟ ବିଧାନ ସଭାକୁ ବହୁ ସଂଖ୍ୟାରେ ନିର୍ବାଚିତ ହୋଇ ଆସିଲେ । ସରକାରୀ କର୍ମଚାରୀ ଓ ସାଧାରଣ ଲୋକଙ୍କ ଆଖିରେ ସେମାନଙ୍କର ପ୍ରତିଷ୍ଠା ବଢ଼ିଲା । ପୂର୍ବେ ତ ଲୋକେ କଂଗ୍ରେସବାଲାଙ୍କୁ ବସିବା ପାଇଁ ଟିକିଏ ସ୍ଥାନ ଦେବାକୁ ଡରୁଥିଲେ । ଏଥର ଅବସ୍ଥା ବଦଳି ଗଲା । କଂଗ୍ରେସର ସରକାର ହେଲା । ଯେତେ କଂଗ୍ରେସ କର୍ମୀ ପ୍ରାର୍ଥୀ ହୋଇ ଠିଆ ହୋଇଥିଲେ ସମସ୍ତେ ଜିତି କରି ଆସିଲେ । କେବଳ ଛତିଆର ଗୋବିନ୍ଦ ମିଶ୍ର ହାରି ଯାଇଥିଲେ । ନୂଆ କଂଗ୍ରେସର ମୁଖ୍ୟମନ୍ତ୍ରୀ ହେଲେ ଗଂଜାମର ବିଶ୍ୱନାଥ ଦାସ । କିନ୍ତୁ ତା'ପରେ ଆସିଲା ଦ୍ୱିତୀୟ ମହାସମର । ପ୍ରଥମ ମହାଯୁଦ୍ଧରେ ସତ୍ୟାନାଶ ହୋଇ ଯାଇଥିବା ଜର୍ମାନୀ ନିଜକୁ ସଜାଡ଼ି ନେଲା । ହିଟଲର ସମଗ୍ର ବିଶ୍ୱ ପାଇଁ ଏକ ଆତଙ୍କ ରୂପେ ଦେଖାଦେଲା । ଇଉରୋପରେ ଚାଲିଥିବା ଯୁଦ୍ଧ ଏସିଆ ଆଡ଼କୁ ମାଡ଼ି ଆସିଲା । ଇଂରେଜ ସରକାର ଜର୍ମାନମାନଙ୍କୁ ଡରୁଥିଲେ । ମନେହେଲା ଇଂରେଜ ସରକାରଙ୍କର ଏସିଆରେ ଥିବା ରାଜୁତି ସତେ ଯେପରି ଜର୍ମାନୀର ହିଟଲର ହାତରେ ପଡ଼ିବ ।

'ଭାରତ ଏକ ବଡ଼ ଦେଶ । ପ୍ରଚୁର ଧନ, ବହୁ ଲୋକ ସେଠାରେ । ତା'ର ସାହାଯ୍ୟ ନିତାନ୍ତ ଦରକାର । ପୁଣି ତାହା ତ ଆମରି ଅଧୀନରେ ଅଛି । ଏଣୁ ଚିନ୍ତା କ'ଣ, - ଏଇଆ ଭାବି ଇଂରେଜ ସରକାର ଘୋଷଣା କଲେ – ''ଭାରତ ମଧ ହିଟଲର ବିରୁଦ୍ଧରେ ଲଢ଼ିବ ।''

ଭାରତକୁ ହିଟଲର ତ ଆକ୍ରମଣ କରୁନାହିଁ । ଏଣୁ ଭାରତରୁ ପଇସା ଏବଂ ଲୋକ ବିନାକାରଣରେ କାହିଁକି ନିଆଯିବ ? ଗାନ୍ଧୀଜୀ ଏବଂ ଜାତୀୟ କଂଗ୍ରେସ ଏଥିରେ ଆପତ୍ତି କଲେ । ଇଂରେଜ ସରକାରଙ୍କ ଏହି ସିଦ୍ଧାନ୍ତର ପ୍ରତିବାଦ କରି ଅଳ୍ପଦିନ ପରେ କଂଗ୍ରେସ ସରକାରମାନେ ଇସ୍ତଫା ଦେଲେ । ଫଳରେ ଏଥର କାମ ମିଳିଗଲା । ଆଚାର୍ଯ୍ୟ ମହାଶୟଙ୍କ ସମେତ କଂଗ୍ରେସ କର୍ମୀମାନେ ଇଂରେଜ ସରକାରଙ୍କ ନୀତିର ବିରୋଧ କରି ଜେଲ୍ ଗଲେ ।

ଯେତେବେଳେ ଆନ୍ଦୋଳନର ଏମିତି ବତାଶ ଉଠୁଥିଲା, କର୍ମୀମାନଙ୍କ ଆଶ୍ରମ ସେତେବେଳେ ଚହଲି ଯାଉଥିଲା । ସେମାନେ ତାକୁ ଛାଡ଼ିକରି ଆସୁଥିଲେ । ଗୋପବାବୁଙ୍କୁ ବରି

ଆଶ୍ରମ କିମ୍ବା ହୋତା ମହାଶୟଙ୍କୁ ବେରବୋଇ ଭଲ ଲାଗୁନଥିଲା । କିନ୍ତୁ ଆନ୍ଦୋଳନ ବେଳ ବ୍ୟତୀତ ବାକୀ ସମୟରେ ଲଢୁଆ ସିପାହୀମାନେ ଆପଣା ଆପଣା ଭିତରେ ଖୁଜୁବୁଜୁ ହେଉଥିଲେ । ବାହାରୁ ଦେଖିବା ଲାଗି ସହକର୍ମୀମାନଙ୍କର ବହୁତ କାମ ଖରାପ ଲାଗୁଥିଲା, ଶୁଣିବାପାଇଁ ସେମିତି ଇଚ୍ଛା ହେଉ ନ ଥିଲା । କିନ୍ତୁ ସମସ୍ତେ କଳି କରି ସାରି ଆସୁଥିଲେ ବରି ଆଶ୍ରମକୁ- ଗୋପବାବୁ ଏବଂ ଆଚାର୍ଯ୍ୟ ମହାଶୟଙ୍କ ପାଖକୁ । ଫଳରେ କଳି କରୁଥିବା ଏଇ କର୍ମୀ ବନ୍ଧୁମାନଙ୍କ ମନରେ ଗାଁ ଗହଳିର ଦୁଃଖୀ-ଦରିଦ୍ର, ଭୋକ-ଉପାସର ଚିନ୍ତା, ଦେଶକୁ ସ୍ୱାଧୀନତା ଆଣିବାର ଭାବନା କ୍ରମେ ଥଣ୍ଡା ପଡ଼ି ଆସୁଥିଲା ।

ସ୍ୱାଧୀନତା ପାଇଗଲେ କାମ ବଢ଼ିଯିବ ବୋଲି ଅନେକେ ଭାବୁଥିଲେ । ମାତ୍ର ସ୍ୱାଧୀନତାର ସୁଆଦକୁ ସବୁ ମଳିମୁଣ୍ଡିଆ ଲୋକଙ୍କୁ କେମିତି ଚଖେଇ ହେବ – ଏ ଭଳି ଚିନ୍ତା ଯେଉଁ ଅଳ୍ପ ଲୋକଙ୍କ ମୁଣ୍ଡକୁ ଘାରୁଥିଲା ତା'ଭିତରେ ଅନ୍ୟତମ ଥିଲେ ଓଡ଼ିଶାର ଆଚାର୍ଯ୍ୟ ହରିହର ଦାସ ।

## (୨୯)

୧୯୪୨ର ଅଗଷ୍ଟ ମାସରେ ଭାରତ ସାରା ଚହଳ ପଡ଼ିଲା । ଗାନ୍ଧୀଜୀ ଡାକ ଦେଲେ ଦେଶକୁ ସ୍ୱରାଜ ଆଣିବା ପାଇଁ । ଛୋଟ ଛୋଟ ପିଲାଙ୍କଠାରୁ ବଡ଼ ବଡ଼ ପାଚିଲାବାଳିଆ ବୁଢ଼ାଙ୍କ ପର୍ଯ୍ୟନ୍ତ ଏଇ କାମରେ ଲାଗିଗଲେ । ପିଲାଏ ସ୍କୁଲ ଛାଡ଼ି ପୋଲିସର ଲାଠି, ଗୁଳିର ସାମନା କଲେ । ଯେଉଁମାନେ କୋର୍ଟ କଚେରୀରେ ଚାକିରୀ, ବ୍ୟବସାୟ କିମ୍ବା ଚାଷବାସ ଛାଡ଼ି ଆସିଲେ, ସେମାନଙ୍କର ଘର କୋରକ ହେଲା । ସେମାନଙ୍କର ସମ୍ପତ୍ତିକୁ ବାଜ୍ୟାପ୍ତ କରାଗଲା । ସେମାନେ ଜେଲ୍ ଗଲେ । ଯେଉଁମାନେ କଲେଜ ଛାଡ଼ି ଆସିଲେ, ସେମାନେ ଯେ ପୁଣି ଜୀବନ ଘେନି ଫେରିବେ- ଏ ବିଶ୍ୱାସ ନ ଥିଲା । କାରଣ ଯୁବକମାନଙ୍କ ଉପରେ ପୋଲିସର ଜୁଲମ ଥିଲା ଅତ୍ୟନ୍ତ ଭୀଷଣ ।

ଆଚାର୍ଯ୍ୟ ମହାଶୟ ତ ମୂଳରୁ ନିଆଁଗିଲା । ଏଣୁ ଆନ୍ଦୋଳନ ଭିତରକୁ ଡେଇଁପଡ଼ି ସେ ଜେଲ୍ ଗଲେ । ବ୍ୟକ୍ତିଗତ ଭାବେ ଆଚାର୍ଯ୍ୟ ମହାଶୟଙ୍କ ପ୍ରତି ତ ସବୁରି ସମ୍ମାନ ଥାଏ । ଏଣୁ ଜୁଲମ୍ ତାଙ୍କ ଉପରେ କିଛି ହୁଏନା । ଏଥରକ ବରଂ ସୁବିଧା ହୋଇଗଲା । ୧୯୩୬ଠାରୁ ନୂଆ ପ୍ରଦେଶ ହେଲା ଦିନରୁ ଓଡ଼ିଶାର ରାଜନୈତିକ ବନ୍ଦୀମାନଙ୍କୁ ହଜାରୀବାଗ ଯିବାକୁ ପଡ଼ିଲା ନାହିଁ । ପ୍ରଦେଶର କେନ୍ଦ୍ର ଜେଲ ହେଲା ବ୍ରହ୍ମପୁର । ଖାଲି ଆଚାର୍ଯ୍ୟ ମହାଶୟ ନୁହନ୍ତି, ଆହୁରି ବହୁତ ସହକର୍ମୀ ଆସି ବ୍ରହ୍ମପୁର ଜେଲରେ ଯୁଟିଲେ । ବୁଢ଼ାମାନଙ୍କ ବ୍ୟତୀତ ଯୁବକ ଓ ପିଲାମାନେ ମଧ ଆସି ପହଞ୍ଚିଲେ । ମୋଟ ଉପରେ ବ୍ରହ୍ମପୁର ଜେଲ ଆଉ କଏଦୀ ଖାନା ନହୋଇ ଆଶ୍ରମ କିମ୍ବା ସେଇମିତି କିଛି ଗୋଟେ ଆଡ୍ଡା ଜାଗା ହୋଇଗଲା ।

ଖାଲି ନାଚିକୁଦି, ସ୍କୁଲ ଛାଡ଼ି ପତାକା ଧରିଲେ ଆନ୍ଦୋଳନର କାମ ଚଳେନା । ସେଥିପାଇଁ ତାତ୍ତ୍ୱିକଜ୍ଞାନ ଦରକାର; ସଂଯତ ଜୀବନର ଆବଶ୍ୟକତା ରହିଛି । ଏଣୁ କଲେଜ ଛାଡ଼ି ଆସିଥିବା ଯୁବକମାନେ, ସେମାନଙ୍କଠାରୁ କମ୍ ବୟସର ଓ ସ୍କୁଲ ଛାଡ଼ି ଆନ୍ଦୋଳନରେ ଭାଗ ନେଇଥିବା

ପିଲାମାନଙ୍କର କ୍ଲାସ ନିଅନ୍ତି । ପୁଣି ଯୁବକମାନଙ୍କର ଅଧ୍ୟୟନ ଚାଲେ । ନିଜେ ସେମାନେ ଜେଲ୍ ଲାଇବ୍ରେରୀରେ ପୁସ୍ତକ ପଢନ୍ତି । ସେମାନଙ୍କ ଭିତରୁ ଅନେକେ ତ ଜେଲରେ ହିଁ ଅଧ୍ୟୟନ କରିବାପାଇଁ ପୂର୍ବରୁ ମାସ ମାସ ଧରି ବହି ସଂଗ୍ରହ କରି ଥାଆନ୍ତି । ପୁଣି ନିଜଠାରୁ ଅଧିକ ଜ୍ଞାନୀ ଓ ଅନୁଭବୀ ବ୍ୟକ୍ତିମାନଙ୍କ ସହ ବିଚାର ଓ ପରାମର୍ଶ କରିବାର ସୁବିଧା ମଧ ଜେଲରେ ସେମାନଙ୍କୁ ମିଳେ ।

ମୂଳରୁ ଆଚାର୍ଯ୍ୟ ମହାଶୟ ତ ଜଣେ ଶିକ୍ଷକ । ଏଣୁ ଜେଲରେ କେତେକ ଯୁବକ ତାଙ୍କ ଶିକ୍ଷକତାର ଉପଯୋଗ କଲେ । କଥା ହେଲା ଯେ ଆଚାର୍ଯ୍ୟ ମହାଶୟ ଦୈନିକ ଗୀତା ଉପରେ କ୍ଲାସ ନେବେ । ଯେତେବେଳେ କ୍ଲାସ ଚାଲିଲା ଖାଲି ଗୀତା ନୁହେଁ, ସେତେବେଳେ ଉପନିଷଦ ଆଦିର ଆଲୋଚନା ମଧ ଏଥିରେ କରାଗଲା । ଜେଲ ବାହାରେ ଥିଲାବେଳେ ଅନେକ କଷ୍ଟ କରିବାକୁ ପଡ଼େ । କାରଣ ଇଂରେଜ ସରକାରର ଡରରେ ଲୋକେ ପାଖେ ପୂରେଇବାକୁ ରାଜି ହୁଅନ୍ତି ନାହିଁ । ଖାଇବା ଆଉ ରହିବାର ଠିକ୍ ନ ଥାଏ । ପୁଣି ସେଥି ସହିତ ଏକାକୀ ବୁଲିବାକୁ ପଡ଼େ । ମାତ୍ର ଜେଲ ଭିତରେ ଏକଦମ୍ ବ୍ୟବସ୍ଥିତ ଜୀବନ । ସାଙ୍ଗ ସାଥୀ ସମସ୍ତେ ମିଳିଯାଆନ୍ତି । ଫଳରେ ସାହସ ହୋଇଯାଏ । ଏପରିକି ଜେଲଖାନାର କର୍ତ୍ତୃପକ୍ଷ ମଧ ଡରନ୍ତି । ଟିକିଏ ଟିକିଏ କଥାରେ, ନ୍ୟାୟ ହେଉକି ଅନ୍ୟାୟ ହେଉ ଅନଶନ ଏବଂ ଜିଦ୍ କରିବା ବଡ଼ ହସଜ ହୋଇପଡ଼େ ।

ସମସ୍ତେ ରାଜନୈତିକ କର୍ମୀ, ବନ୍ଦୀ ଓ ବିପ୍ଳବୀ ସମାନ । ଏଣୁ ନିଜର ଓଜନ ଭୁଲିଯିବା କିମ୍ବା ବ୍ୟବହାରରେ ଅନ୍ୟ ପ୍ରତି ଅସଂଯତ ଭାବ ପ୍ରକାଶ କରିବା କିଛି ଅସମ୍ଭବ କଥା ନୁହେଁ । ସୁତରାଂ, ଯେଉଁମାନେ ସତ୍ୟାଗ୍ରହୀ, ସେମାନଙ୍କ ପାଇଁ ଗାନ୍ଧୀଜୀଙ୍କର କେତେକ ନିୟମ ଥିଲା । ତା' ଭିତରୁ ଗୋଟିଏ ହେଲା 'ମାଦକ ଦ୍ରବ୍ୟ ସେବନ' ଓ 'ଧୂମପାନ'ର ନିଷେଧ । ମାତ୍ର ବହୁ ବିପ୍ଳବୀ କର୍ମୀ ଜେଲରେ ଏ ନିୟମକୁ ସଂପୂର୍ଣ୍ଣ ପାଳନ କରିପାରୁ ନଥିଲେ । ଏପରିକି ମୁଁ ''ବ୍ରହ୍ମପୁର ଜେଲରୁ ହିଁ ଧୂମପାନ ଶିକ୍ଷା ଆରମ୍ଭ କଲି'' ବୋଲି ଅନେକେ ଓଡ଼ିଆ ବିପ୍ଳବୀ ଏବେ ମଧ କହନ୍ତି । ସେ ଯାହାହେଉ ଆଚାର୍ଯ୍ୟ ମହାଶୟ ପ୍ରଭୃତି ଟିକିଏ ଅଡୁଆ ଢଙ୍ଗର ଥିଲେ । ବହୁତ ମିଳୁଛି ବୋଲି ଗୁଡ଼ାଏ ଖାଇବା, ସୁବିଧା ମିଳୁଛି, ଏଣୁ ଶ୍ରମ କରିବା ନାହିଁ- ଏସବୁ ତାଙ୍କର ପସନ୍ଦ ଆସେନା । ନିଜ ନିଜ ସାଙ୍ଗମାନଙ୍କୁ ଘେନି ଜେଲରେ ଗୋଟିଏ ଗୋଟିଏ ଦଳ ଆପଣା ଆପଣାର ଅଲଗା ମେସ୍ କରି ଥାଆନ୍ତି । ଜେଲ୍‌ରୁ ଖୋରାକ ଆସେ । ମେସ୍ ମ୍ୟାନେଜରମାନେ ନିଜ ମେସ୍‌ରେ ଥିବା କୁଟୁମ୍ବ ଅନୁସାରେ ତାହା ଭାଗ କରି ନିଅନ୍ତି । ଏପରିକି କେଉଁ ମେସ୍, କେତେ ପ୍ରକାରର ବ୍ୟଞ୍ଜନ ତିଆରି କରି ଖାଇପାରିବେ, ସେଥିଲାଗି ପ୍ରତିଯୋଗିତା ହୁଏ । ମାତ୍ର ଆଚାର୍ଯ୍ୟ ମହାଶୟଙ୍କ ମେସ୍‌ରେ ସବୁଦିନେ ଭାତ, ଡାଲି, ତରକାରୀ । ଅନ୍ୟମାନେ ହାଲୁଆ କରିବାପାଇଁ ସୁଜି ନେଲେ ଏମାନେ ନିଅନ୍ତି ଖେଚୁଡ଼ି କରିବା ଲାଗି ନଡ଼ିଆ ।

ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ଆଉ ଦୁଇଜଣ ଅବାଗିଆ ଲୋକ ଥାଆନ୍ତି । ସେମାନେ ହେଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ଶ୍ରୀ ବ୍ରଜମୋହନ ସିଂ । ସଂକ୍ଷେପରେ ସେମାନେ ଗୋପବାବୁ ଓ ଚାଟୁବାବୁ । ଆଚାର୍ଯ୍ୟ ମହାଶୟ, ଗୋପବାବୁ ଓ ଚାଟୁବାବୁଙ୍କ ମିଳିତ ମେସ୍‌ର ସଂକ୍ଷିପ୍ତ ନାମହେଲା ଗୋଆଚା ମେସ୍ । ସେମାନଙ୍କ ସଙ୍ଗେ ଆଉ କେତୋଟି ନନ୍ଦୀ, ଭୃକୁଟୀ ମଧ ଥାଆନ୍ତି । ଠିକ୍ ବରି

ଆଶ୍ରମରେ ଥିଲେ, ନିଜର ଦୈନନ୍ଦିନ କାରବାର ଯେମିତି ଚାଲିଥାଆନ୍ତା, ବ୍ରହ୍ମପୁର ନ' ନମ୍ବରୀ ଗୋଆଚା ମେସ୍‌ରେ ସେମାନେ ନିଜର କାମଦାମ ଠିକ୍ ସେହିପରି ଚଳାଉଥିଲେ । ନାନାରକମର ଜଟିଳ ରାନ୍ଧଣା ବଦଳରେ ଏହି ମେସ୍‌ରେ ସାଧାରଣତଃ ଭାତ ଓ ଡାଲଣା ହୁଏ । ଚୁଡ଼ା, ଗୁଡ଼, ନଡ଼ିଆ, ଗହମରୁଟି ଖାଇ ଗୋଆଚା ମେସ୍‌ର ସ୍ୱାଧୀନତା ସଂଗ୍ରାମୀ ରାଜବନ୍ଦୀମାନେ ପ୍ରତିଦିନ କିଛି ନା କିଛି ପରିମାଣରେ ଦେହ ମିହନ୍ତ କରିବାକୁ ଚେଷ୍ଟା କରନ୍ତି । ସୂତାକଟା ଓ ଲୁଗାବୁଣା ଚାଲେ । ପ୍ରାର୍ଥନା ହୁଏ । ଜେଲ୍‌ଖାନାର ନିୟମ ମାନି ସେମାନେ ଚଳନ୍ତି । ଜେଲଖାନା ଭିତରେ ରହିଥିବା ଅବସରରେ ଆଚାର୍ଯ୍ୟ ହରିହର ଦାସ ଭଗବଦ୍‌ଗୀତାର ଓଡ଼ିଆ ଅନୁବାଦ କରିଥିଲେ ।

ଥରେ ଜେଲଖାନାର କେତେକ ବନ୍ଧୁ ସେମାନଙ୍କ ନିଜ ମେସ୍‌ରେ କ୍ଷୀରି କରିବା ପାଇଁ ଜେଲ କର୍ତ୍ତୃପକ୍ଷଙ୍କୁ ଚିନି ମାଗିଲେ । ମାତ୍ର ଜେଲଖାନାର କର୍ତ୍ତୃପକ୍ଷ ସେମାନଙ୍କୁ ଜଣାଇ ଦେଲେ ଯେ, ସେମାନଙ୍କର ପ୍ରାପ୍ୟ ଚିନିସବୁ ଆଚାର୍ଯ୍ୟ ମହାଶୟଙ୍କ ମେସକୁ ଦେଇ ଦିଆଯାଇଛି ।

ବନ୍ଧୁମାନେ ଜେଲରଙ୍କୁ ପଚାରିଲେ ''ଆଚାର୍ଯ୍ୟ ମହାଶୟଙ୍କ ମେସରେ ତ କେହି ଚିନି ଖାଆନ୍ତି ନାହିଁ ।''

''ଏଇ ଦେଖନ୍ତୁ ଖାତାରେ ଦସ୍ତଖତ ହୋଇଛି'' — ଜେଲର୍ ମହାଶୟ ଖାତା ଦେଖାଇଲେ । ହରିହର ଦାସ ବୋଲି ଦସ୍ତଖତ କରି କେହି ବନ୍ଧୁ ଜେଲ୍‌ରୁ ତାଙ୍କ ନିଜ ମେସ୍ ପାଇଁ ଚିନି ନେଇଥିବା ଜଣା ପଡ଼ିଲା ।

ଆଚାର୍ଯ୍ୟ ମହାଶୟ ତ କାହାରିକୁ କିଛି କହିବା ଲୋକ ନୁହନ୍ତି । ଏଣୁ ତାଙ୍କ ନାଆଁ ନେଇ ଚିନି ଖାଇବାଟା ଅନ୍ୟ ବନ୍ଧୁମାନଙ୍କ ପାଇଁ ଜଘନ୍ୟ କଥା ନ ଥିଲା ।

## (୩୦)

ଗୋଆଚା ମେସ୍‌ଟି ଜେଲଖାନା ଭିତରର ଗୋଟିଏ କୋଠରୀ ଭିତରେ ସୀମିତ ନ ଥିଲା । ମାପଚୁପ କଲେ ହୁଏତ ତା'ର ସୀମା ଚାରିଗୋଟି କାନ୍ଥ ଭିତରେ ନିର୍ଦ୍ଦେଶ କରାଯାଇ ପାରେ । କିନ୍ତୁ ଯେଉଁମାନଙ୍କୁ ଘେନି ତାହା ଚାଲିଥିଲା, ସେମାନଙ୍କ ଚିନ୍ତାଧାରା ସୁଦୂର ପ୍ରସାରୀ ଥିଲା । ଦେଶ ଦୁନିଆର ସମସ୍ୟା ସହିତ ଯେ କୌଣସି ଛୋଟ କଥାଟିକୁ ବି ସେମାନେ ତିଳେ ତିଳେ ତୁଳନା କରି ଦେଖୁଥିଲେ । ପ୍ରକୃତ ଅର୍ଥରେ ସେମାନେ ଥିଲେ ସତ୍ୟାଗ୍ରହୀ ।

ଦେଶରୁ ଦାରିଦ୍ର୍ୟ ସମସ୍ୟାର ସମାଧାନ କରିବା ଲାଗି ଗାନ୍ଧୀଜୀ ତ ସମସ୍ତଙ୍କୁ ଖଦଡ଼ ପିନ୍ଧିବାକୁ କହିଥିଲେ । ମାତ୍ର ବ୍ରହ୍ମପୁର ଜେଲରେ ସେତେବେଳେ ଆଚାର୍ଯ୍ୟ ମହାଶୟଙ୍କର ପୁରୁଣା ଖଦଡ଼ ଲୁଗା ଚିରିଯିବାକୁ ଆରମ୍ଭ କଲା । ଆଉ ନୂଆ ଲୁଗା ମିଳୁଛି କେମିତି ? ଗାନ୍ଧୀଜୀ ତ ପ୍ରତ୍ୟେକ ଲୋକଙ୍କୁ ନିଜ ହାତ କଟା ସୂତାର ଲୁଗା ପିନ୍ଧିବାକୁ କହୁଥିଲେ । ପ୍ରତ୍ୟେକ ସତ୍ୟାଗ୍ରହୀର ଲକ୍ଷ୍ୟ ରହିଲା, ''ନିଜ ହାତ ସୂତା, ନିଜ ଭାତ ମୁଠି ।'' ଏଣୁ ସୂତା କାଟି, ଲୁଗା ବୁଣିବା ଲାଗି ଜେଲ କର୍ତ୍ତୃପକ୍ଷଙ୍କୁ ଅନୁମତି ଦେବାଲାଗି ଗୋପବାବୁ କହିଲେ । ପ୍ରଥମେ ଜେଲ କର୍ତ୍ତୃପକ୍ଷ ଏଥିପାଇଁ ଅନୁମତି ଦେବାଲାଗି ଟିକେ ନାରାଜ ହେଉଥିଲେ । କିନ୍ତୁ ପରେ ଗୋପବାବୁଙ୍କ ଟାଣପଣ ତାଙ୍କୁ ଏଥିପାଇଁ

ବାଧ କଲା । ଶେଷରେ ଜେଲଖାନାକୁ ତନ୍ତ ଆସିଲା । ଗୋପବାବୁ ନିଜେ ତାହା ସଜାଡ଼ିଲେ । ଲୁଗାବୁଣା ଚାଲିଲା । ପାଖରେ ଥିବା ଆଉ କେତେକ ଯୁବକଙ୍କର ଲୁଗାବୁଣା ଟ୍ରେନିଂ ମଧ ହୋଇଗଲା ।

ମେସ୍ ଭିତରେ ରୁଟି ପ୍ରସ୍ତୁତ କରିବା ଥିଲା ଆଚାର୍ଯ୍ୟ ମହାଶୟଙ୍କ ନିଜ କାମ । ରୋଷେଇରେ ଅନ୍ୟ ଯିଏ ଯାହା କରୁନା କାହିଁକି ସେତକ ସେ ନିଷ୍ଠୟ କରୁଥିଲେ । ନିଆଁର ରଡ ନିଭିଗଲେ ଖାଲି ପାଉଁଶ ଗୁଡ଼ାକ ଉପରକୁ ଦିଶେ । ଏଣୁ ପାଉଁଶରୁ ନିଆଁ ଆବିଷ୍କାର କରାଯିବ କେମିତି ? ନ ହେଲେ ରୁଟି ସେକି ହେବ କେମିତି ? ପୁଣି ପାଖରେ କୁଲା କିମ୍ବା ବିଞ୍ଚଣୀ କିଛି ହେଲେ ନାହିଁ । ତାହା କ'ଣ ଘର ହୋଇଛି ଯେ, ସେଗୁଡ଼ାକର ବ୍ୟବସ୍ଥା ଯଥା ସମୟରେ ହୋଇଯିବ ? କିନ୍ତୁ ଏଥିଲାଗି କାମ ଅଚଳ ରହେ ନାହିଁ । ନିଜ ଗାମୁଛା କାନି ହଲେଇ ସେ ବିଞ୍ଚନ୍ତି । ବେଳେବେଳେ ରଡ ନିଆଁରେ ଗାମୁଛା ବାଜି ବହଳିଆ ଧୂଆଁ ବାହାରେ । କାହିଁକି ? ତାହା ହେଉଛି ଗାମୁଛା ପୋଡ଼ି ଯିବାର ଫଳ ।

ଯେତେବେଳେ ସତ୍ୟାଗ୍ରହୀମାନେ ଜେଲ ଭିତରେ ଥିଲେ, ସେତେବେଳେ ବାହାରର ବାତାବରଣ ଅଲଗା ରକମର ହୋଇ ଆସୁଥାଏ । ସ୍ୱାଧୀନତା ପାଇଁ ଲଢୁଥିବା ସିପାହୀମାନେ ନିଜ ନିଜ ଭିତରେ ଅଲଗା ହେବା ଆରମ୍ଭ କରିଦେଇ ଥାଆନ୍ତି । ପୁଣି ମୁସଲମାନମାନଙ୍କର ସ୍ୱତନ୍ତ୍ର ରାଜ୍ୟ ହେବା କଥା ବିଚାର ଚାଲିଥାଏ ।

ଏତିକିବେଳେ ଓଡ଼ିଶାରେ ଏକ ଦେଶୀ ମନ୍ତ୍ରିମଣ୍ଡଳ ଶାସନକୁ ଆସିଲେ । ସେମାନଙ୍କ ଉପରେ ବିଦେଶୀ ସରକାରଙ୍କ କର୍ତ୍ତୃତ୍ୱ ରହିଥିଲେ ସୁଦ୍ଧା ଓଡ଼ିଶାର କେତେକ ଉନ୍ନତି ଏହା ଫଳରେ ହେଲା । ରାଜନୈତିକ ବନ୍ଦୀମାନେ ଖଲାସ ହେଲେ । ଇଂରେଜ ସରକାର ଓ ଜାତୀୟ କଂଗ୍ରେସ ମଧରେ ବୁଝାମଣା ବଳରେ ଏହା ଘଟିଲା । ଏଇ ହେଉଛି ଆଚାର୍ଯ୍ୟ ମହାଶୟଙ୍କ ଶେଷଥର ଜେଲ୍ ଯିବା । ଏଇ ଶେଷଥର ପାଇଁ ଯେଉଁଦିନ ସେ ଜେଲ ଗଲେ, ସେ ଦିନର କଥା ଏପରି –

ସେଦିନ ୪୨ ମସିହାର ଅଗଷ୍ଟ ୯ ତାରିଖ । ଭାରତୀୟ ଜାତୀୟ କଂଗ୍ରେସ 'ଭାରତ ଛାଡ଼' ପ୍ରସ୍ତାବ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଦେଶସାରା ବ୍ୟାପକ ଧରପଗଡ଼ ଆରମ୍ଭ ହୋଇ ଯାଇଥାଏ । ଓଡ଼ିଶାରୁ ଯେଉଁ ପ୍ରତିନିଧିମାନେ କଂଗ୍ରେସ କମିଟୀର ବୈଠକକୁ ଯାଇଥାନ୍ତି, ସେମାନଙ୍କୁ ସେଇଆଡୁ ଜେଲକୁ ନିଆସରିଥାଏ । ଏ ଖବର କିନ୍ତୁ କଟକରେ ଆସି ପହଞ୍ଚି ନଥାଏ । ସକାଳୁ ଗୋପବାବୁ ଏବଂ ଆଚାର୍ଯ୍ୟ ମହାଶୟ ବାହାରି ପଡ଼ିଲେ ଖବର ଜାଣିବା ପାଇଁ- କଟକ ସହରରେ କ'ଣ ହୋଇଛି । ଉଭୟେ ସମାଜ ଅଫିସକୁ ଚାଲିଲେ । ସେଠାରେ ଖବର ମିଳିଲା ଯେ, କଂଗ୍ରେସ କମିଟୀର ବୈଠକକୁ ଯାଇଥିବା ଲୋକେ ତେଣେ ଜେଲକୁ ଗଲେଣି । ଏ ଖବର ପାଇବା ପରେ ପରେ ଉଭୟେ ଉଭୟଙ୍କ ମୁହଁକୁ ଚାହିଁଲେ । କାରଣ ପ୍ରଥମେ ତ ସେଇମାନଙ୍କ ପାଳି ।

ଉତ୍କଳ ଭୀମ ସ୍ୱର୍ଗତ ପଦ୍ମଚରଣ ରାୟ ଆଚାର୍ଯ୍ୟ ମହାଶୟଙ୍କ ଛାତ୍ର । ଗୋପବାବୁ ଓ ଆଚାର୍ଯ୍ୟ ମହାଶୟ ଉଭୟଙ୍କୁ ସମାଜ ଅଫିସ ଭିତରକୁ ଯାଉଥିବାର ଦେଖି ସେ ଭେଟିବାକୁ ଆସିଲେ । ଖବର ଦେଲେ ଯେ ପୋଲିସ, କଂଗ୍ରେସବାଲାମାନଙ୍କୁ ଖୋଜୁଛନ୍ତି । ତା'ପରେ ଗୋପବାବୁ ନିଜର

ବାକିଥିବା ସବୁ କାମତକ ପୂରାକରି ଦେବାକୁ ଚାଲିଲେ ବାଖରାବାଦ । ସେଇଠି ତାଙ୍କ ଘରେ ସେ ଧରାହେଲେ । ଏଣେ ଆଚାର୍ଯ୍ୟ ମହାଶୟ ନିମଚଉଡ଼ି ଛକଠାରୁ ବାହାରି ସହର ସାରା ଖବର ନେଲେ ଆଉ କାହାର କ'ଣ ହେଲା । କଟକରେ କେହି ତାଙ୍କୁ ଧରିଲେନି । କାରଣ ତାଙ୍କ ନାମ ପୁରୀ ତାଲିକାରେ ଥିଲା ।

ଉପରଓଳି, କଟକର ତଥ୍ୟ ସଂଗ୍ରହ ଶେଷକରି ସେ ତାଳଚେର ଗାଡ଼ିରେ ପୁରୀକୁ ଟିକଟ କାଟିଲେ । ବାଟରେ ଡେଲାଙ୍ଗ ଷ୍ଟେସନ । ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଆଶ୍ରମ ସେଇଠାରେ । ମନହେଲା ଡେଲାଙ୍ଗରେ ପହଞ୍ଚି ଖବରଟା ତାଙ୍କୁ ଦେଇଦେବେ । ମାତ୍ର ଗାଡ଼ିରୁ ଓହ୍ଲାଇବା ମାତ୍ରେ ସେ ଖବର ପାଇଲେ ଯେ ହୋତା ମହାଶୟ ସକାଳଠାରୁ ଧରା ହୋଇ ଗଲେଣି । ଆଚାର୍ଯ୍ୟ ମହାଶୟ ପୁଣି ଗାଡ଼ିକୁ ଫେରିଗଲେ ।

ପୁରୀକୁ ଗଲେ ସେ ଡାକ୍ତର ଶଙ୍କର ବାବୁଙ୍କ ଘରେ ରହନ୍ତି । ଶଙ୍କର ବାବୁ ତାଙ୍କର ସାନ ଭାଇ । ରିକ୍ସା ଖଣ୍ଡକ ଯେମିତି ତାଙ୍କ ଦୁଆର ମୁହଁକୁ ଲାଗିଛି ପୁଲିସ ବାଲା ଜାଣିପାରିଲେ ଯେ, ଆଚାର୍ଯ୍ୟେ ଆସିଗଲେ । ଆଗରୁ ତ ସେମାନେ ତାଙ୍କୁ ଅପେକ୍ଷା କରି ରହିଥିଲେ କିଛି ସମୟ ମଧ୍ୟରେ ଆଚାର୍ଯ୍ୟ ମହାଶୟ ମଧ୍ୟ ଚାଲିଲେ । ଏ ହେଲା ଶେଷ ଜେଲ ଯାତ୍ରାର ଆରମ୍ଭ ଦିନ ।

## (୩୧)

ମଣିଷର ଶିକ୍ଷା ଦରକାର । ଖାଇବା, ରହିବା ଭଳି ତାହା ଏକ ଅନିବାର୍ଯ୍ୟ ଆବଶ୍ୟକତା । ସେଥିପାଇଁ ଆଜି ବିଶ୍ୱ ଜାତିସଂଘ ଦୁନିଆର ସବୁ ଲୋକଙ୍କ ପାଇଁ ଯେଉଁ ପାଞ୍ଚ ଗୋଟି ବସ୍ତୁର ଆବଶ୍ୟକତାକୁ ସ୍ୱୀକାର କରିଛନ୍ତି, ତା ଭିତରୁ ଶିକ୍ଷା ହେଉଛି ଗୋଟିଏ । ପୂର୍ବରୁ ଏ ଦେଶରେ ଉତ୍ତମ ଶିକ୍ଷାର ପ୍ରଚଳନ ଥିଲା । ମାତ୍ର ଇଂରେଜମାନଙ୍କ ଆଗମନ ପରେ ଏହାକୁ ଦୂଷିତ କରାଯିବାର ଉଦ୍ୟମ ଚାଲିଲା । ପରିଶେଷରେ ନାନା କାରଣରୁ ସେମାନେ ଏଥିରେ ସଫଳ ହେଲେ । ଶିକ୍ଷା ବୋଇଲେ କେବଳ ପୋଥିଗତ ବିଦ୍ୟା ହୋଇ ଏଠାରେ ରହିଲା ।

ଲର୍ଡ ମ୍ୟାକେଲ ବୋଲି ଜଣେ ଇଂରେଜ ସାହେବ, ପ୍ରଚଳିତ ଶିକ୍ଷାର ଉଦ୍ଦେଶ୍ୟ ସମ୍ବନ୍ଧରେ ଚିନ୍ତା କରିଥିଲେ ଯେ, ଇଂରେଜ ସରକାରଙ୍କ ଶାସନକଳ ଚଳାଇବା ପାଇଁ ପଞ୍ଚାଏ ମୂଲିଆ ଯୋଗାଡ଼ କରିବା । ଭାରତୀୟ ଦେହ ଭିତରେ ଇଂରେଜୀ ଧରଣର ଚିନ୍ତା ଖୁନ୍ଦିବା ଓ ଇଂରେଜୀ ଶାସନକୁ ଚଳେଇବା ଲାଗି ଧୂରନ୍ଧର ଲୋକ ଯୋଗାଡ଼ କରିବା ଥିଲା ଭାରତବର୍ଷରେ ଇଂରେଜୀ ଶିକ୍ଷା ପଦ୍ଧତି ପ୍ରଚଳନର ମୁଖ୍ୟ କାମ ।

ଯେତେବେଳେ ଇଂରେଜ ସରକାରଙ୍କ ପ୍ରତି ଭାରତୀୟ ଲୋକଙ୍କର ଆନୁଗତ୍ୟ ଚରମ ସୀମାରେ ପହଞ୍ଚିଥିଲା, ଗାନ୍ଧୀଜୀ ସେତିକିବେଳେ ଆସି ଦେଖାଦେଲେ । ଏ ଦେଶରେ ଶାସନ, ଶିକ୍ଷା, ଲୋକଙ୍କ ଅବସ୍ଥା, ଦାରିଦ୍ର୍ୟ ଓ ଅନାଟନ ବିଷୟରେ ତାଙ୍କର ଅନୁଭବସିଦ୍ଧ ଜ୍ଞାନ ଥିଲା । ଦେଶକୁ ଶାସନ କରିବା ଲାଗି କେତେକ ଠିକାଦାର ଲୋକଙ୍କ ବଦଳରେ ସେ ଚାହୁଁ ଥିଲେ ଗାଁ ଲୋକେ ପଞ୍ଚାୟତ ଗଢ଼ି ନିଜ କଥା ନିଜେ ବୁଝନ୍ତୁ । ଲୋକଙ୍କ ଅବସ୍ଥା ସୁଧାରିବା ଲାଗି, ଅଭାବ

ଏବଂ ଅନାଟନକୁ ତଡ଼ିବା ପାଇଁ ଗାଁଏ ଗାଁଏ ଖଦୀକାମ ଓ ସୂତାକଟାର ପ୍ରଚାର ସେ କରୁଥିଲେ । ସେହିପରି ଶିକ୍ଷା ବିଷୟରେ ତାଙ୍କର ନିର୍ଦ୍ଦିଷ୍ଟ ଯୋଜନା ଥିଲା ।

ଗାନ୍ଧୀଜୀଙ୍କ ମତରେ ଶିକ୍ଷା କେବଳ ବହି ଭିତରେ ସୀମିତ ନ ରହି, ଜୀବନର ସବୁ କ୍ଷେତ୍ରରେ ବ୍ୟାପୀ ଯିବା ଦରକାର । ଦେହ, ମନ ଏବଂ ହୃଦୟର ସମ୍ପୂର୍ଣ୍ଣ ବିକାଶରେ ପ୍ରକୃତ ଶିକ୍ଷା ରହିଛି ବୋଲି ସେ କହୁଥିଲେ । ଏ ସମ୍ପର୍କରେ ତାଙ୍କ ଦ୍ୱାରା ପ୍ରକାଶିତ ହେଉଥିବା 'ହରିଜନ' କାଗଜରେ ସେ ଅନେକ ଲେଖା ଲେଖିଥିଲେ । ଶେଷରେ ୧୯୩୭ ମସିହା ଅକ୍ଟୋବର ୨୩ ତାରିଖରେ ୱାର୍ଦ୍ଧାଠାରେ ଏକ ସମ୍ମିଳନୀ ବସିଥିଲା । ପ୍ରଚଳିତ ଶିକ୍ଷାର ଅପକାରିତା ବୁଝି ଯେଉଁମାନେ ନୂତନ ଶିକ୍ଷାପଦ୍ଧତି ଚାହୁଁଥିଲେ, ସେମାନେ ଏହି ସମ୍ମିଳନୀରେ ଯୋଗଦେଇ ଥିଲେ । ବିଭିନ୍ନ ଦିଗରୁ ଆଲୋଚନା ହେଲା । ପରିଶେଷରେ ବିଶିଷ୍ଟ ଶିକ୍ଷାବିତ୍ ଓ ପରବର୍ତ୍ତୀ କାଳରେ ଭାରତବର୍ଷର ରାଷ୍ଟ୍ରପତି ଡ: ଜାକିର ହୋସେନ୍‌ଙ୍କ ଅଧକ୍ଷତାରେ ନୂତନ ଶିକ୍ଷା ପଦ୍ଧତିର ଦିଗ୍‌ଦର୍ଶନ ଦେବାଲାଗି ଗୋଟିଏ କମିଟି ଗଢ଼ାଗଲା । କେ.ଜି. ସିୟାଉଦ୍ଦିନ୍, କାକା କାଲେଲ୍‌କର, କିଶୋର ଲାଲ ମଶ୍ରୁୱାଲା, ଜେ.ସି. କୁମାରପ୍ପା, ଶ୍ରୀକୃଷ୍ଣ ଦାସ ଜାଜୁ, ବିନୋବା ଭାୱେ, ଆଶାଦେବୀ, ଆର୍ଯ୍ୟନାୟକମ୍ ଏଥିରେ ସଭ୍ୟ ରହିଲେ । ଏହି ସମ୍ମିଳନୀର ନାମ କରଣ ହେଲା 'ଜାତୀୟ ଶିକ୍ଷା ସମ୍ମିଳନୀ ।'

ସମ୍ମିଳନୀ ଶେଷରେ ନିମ୍ନମତେ ଏକ ପ୍ରସ୍ତାବ ପାସ୍ କରାଯାଇଥିଲା- (୧) ସାତାବର୍ଷ ଲାଗି ମାଗଣା ଓ ଯେ କୌଣସିମତେ ଦେଶସାରା ପିଲାମାନଙ୍କୁ ଶିକ୍ଷାଦାନ କରାଯାଉ । (୨) ଶିକ୍ଷାଦାନ କେବଳ ମାତୃଭାଷାରେ ଦିଆଯାଉ । (୩) ଗାନ୍ଧୀଜୀଙ୍କ ବିଚାର ଅନୁସାରେ ସମ୍ମିଳନୀ ନିଷ୍ପତ୍ତି କରୁଛି ଯେ, ପିଲାମାନେ ଦେହ ମିହନ୍ତ କରିଶିଖନ୍ତୁ । ଦେହ ମିହନ୍ତକୁ ମୂଳ ବୋଲି ଧରି ସେମାନଙ୍କୁ ପାଠପଢ଼ା ଯାଉ । ପିଲାଏ କିଛି ଜିନିଷ ବି ଆମଦାନୀ କରନ୍ତୁ । ସେମାନଙ୍କ ଆଖପାଖରେ ଯେଉଁସବୁ କଞ୍ଚାମାଲ ମିଳିପାରିବ, ତାହାରି ସାହାଯ୍ୟରେ ସେମାନେ ନାନା ରକମର ଉଦ୍ୟୋଗ, ଧନ୍ଦା ବି କରନ୍ତୁ । (୪) ସମ୍ମିଳନୀ ଆଶା ପ୍ରକାଶ କରିଥିଲା ଯେ କ୍ରମେ ଏହି ଶିକ୍ଷା ପଦ୍ଧତି ସମୁଦାୟ ଶିକ୍ଷକ ସମାଜକୁ ପ୍ରଭାବିତ କରିବ । ଶିକ୍ଷକମାନେ ପ୍ରାଥମିକ ସ୍ତରରୁ ଦେଶପାଇଁ ନୂଆ ଧରଣର ନାଗରିକ ଗଢ଼ିବେ । ସ୍ୱାବଲମ୍ବନଶୀଳ ହେବା ଲାଗି ଛାତ୍ରମାନେ ପିଲାଦିନରୁ ପ୍ରେରଣା ପାଇବେ ।

ସେତେବେଳେ କେନ୍ଦ୍ରରେ ଇଂରେଜ ସରାକାରଙ୍କ ବାନା ଉଡୁଥିଲେ ବି ଭାରତର ନାନା ପ୍ରଦେଶରେ ନିର୍ବାଚିତ କଂଗ୍ରେସୀ ଲୋକେ, ଦେଶୀଲୋକେ ମନ୍ତ୍ରୀ ହେଲେ । ଗାନ୍ଧୀଜୀଙ୍କର ଏହି ନୂଆ ଯୋଜନାକୁ ନିଜ ପ୍ରଦେଶର ଶିକ୍ଷାନୀତି ବୋଲି ସେମାନେ ଗ୍ରହଣ କରି ନେଲେ । ବିଭିନ୍ନ ପ୍ରଦେଶରେ, 'ୱାର୍ଦ୍ଧା ଶିକ୍ଷା ପଦ୍ଧତି' ବା 'ବୁନିୟାଦୀ ତାଲିମ'ର ଧୂମ୍ ଚାଲିଲା । ଗୋପବାବୁ ଓ ଆଚାର୍ଯ୍ୟ ମହାଶୟଙ୍କ ଭଳି ଗଠନମୂଳକ କର୍ମୀଙ୍କ ମନକୁ ଏ କଥା ଖୁବ୍ ପାଇଲା । ତାହା ଛଡ଼ା ଆଚାର୍ଯ୍ୟ ମହାଶୟଙ୍କ ଲାଗି ଏ ଯୋଜନା ବା ନୂଆ କଥା କ'ଣ ?

ପ୍ୟାରୀମୋହନ ଏକାଡେମୀରେ ମାଷ୍ଟର ଥିଲାବେଳେ ତ ପିଲାଙ୍କ ଘର ଘର ବୁଲି ସେ ମାଗଣା ପାଠ ବାଣ୍ଟୁଥିଲେ । ଅଧା ପାଠୁଆ ବା ଅପାଠୁଆ ଲୋକେ ଯେମିତି ଇଂରେଜୀ ନ

ମିଶେଇଲେ କଥାବାର୍ତ୍ତା କରନ୍ତି ନାହିଁ, ସେ ସେ ଦରର ଲୋକ ନୁହନ୍ତି । ପୁଣି ଦେହ ମିହନ୍ତ ପ୍ରୟୋଗ ତାଙ୍କ ଆଗରେ ନୂଆ ଅବା କେଉଁଠି ? ସତ୍ୟବାଦୀର ବକୁଳବନରେ ଯେଉଁ ସ୍କୁଲଘର ତିଆରି ହୋଇଥିଲା, ତାକୁ କରିଥିଲେ କିଏ ? ଏଇ ପିଲାଏତ ! ଇଟା ପୋଡ଼ିବା, କାଠ କାଟିବା, ଘର ଛାଉଣୀ, ଏସବୁ କାମ ପିଲାଏ କରିପାରନ୍ତି । ପୁଣି ଗାଁରେ କିଏ ବାଧିକା ପଡ଼ିଲେ, କେଉଁଠି ହଇଜା ବ୍ୟାପିଲେ, ରଥ ଯାତ୍ରାରେ ମଢ଼ା ଶୋଇଲେ କିମ୍ବା କାକଟପୁର, ନିମାପଡ଼ା ଅଞ୍ଚଳକୁ ବନ୍ୟାରେ ଚାଉଳ ବାଣ୍ଟିବାକୁ ଗଲେ, ସାଙ୍ଗରେ ତ ପିଲାମାନେ ଯାଆନ୍ତି । ଦେହ ମିହନ୍ତ କଲେ ଯେ ବୁଦ୍ଧି କମିଯାଏ, ସେ କଦାପି ଏହାର ପ୍ରମାଣ ପାଇ ନାହାନ୍ତି ।

ସୁତରାଂ, ଆଶ୍ଚର୍ଯ୍ୟ ବା ଚମତ୍କୃତ ହେଲାଭଳି ଏଥିରେ ତାଙ୍କ ପାଇଁ କିଛି ନଥିଲା । କେବଳ ୧୯୦୯ ମସିହାରେ ଗରିବ ଓଡ଼ିଶାର ବକୁଳବନ ଭିତରେ ସେମାନେ ଯେଉଁ ଲକ୍ଷ୍ୟନେଇ କାମ କରିଥିଲେ ଆଜି ଗାନ୍ଧୀଜୀ ତାକୁ ଭାରତ ବ୍ୟାପୀ ରୂପ ଦେବାର ସେ ଆନନ୍ଦ ଅନୁଭବ କଲେ ।

ଗୋପବାବୁ ବରୀରେ ରହୁଥିଲେ । ଏହି ନୂତନ ଶିକ୍ଷାର କାର୍ଯ୍ୟକ୍ରମ ଆରମ୍ଭ କରାଗଲା ସେହିଠାରେ । ଗାନ୍ଧୀଜୀଙ୍କ ୱାର୍ଦ୍ଧା ଶିକ୍ଷା ପଦ୍ଧତି ଭାରତର ସବୁ ଚିନ୍ତାଶୀଳ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏଣୁ ଓଡ଼ିଶାର ଏକ ଅପନ୍ତରା ଗାଁ ବରିରେ ଯେତେବେଳେ ଏହାର ପ୍ରୟୋଗ ଚାଲିଲା, ସେତେବେଳେ ଲୋକେ ତା' ଆଡ଼କୁ ତକେଇ ବସିଲେ । ବହୁତ ଜଣାଶୁଣା ଲୋକଙ୍କ ପିଲେ ସେଠାକୁ ପଢିବାକୁ ଗଲେ । ସେତେବେଳକୁ ଭାରତ ପରାଧୀନ । ଏଣେ ସ୍ୱାଧୀନତାର ଆନ୍ଦୋଳନ ଚାଲିଛି । ପୁଣି ଦୁନିଆରେ ଦ୍ୱିତୀୟ ମହାଯୁଦ୍ଧର ଘନଘଟା । ଏ ବିଷୟରେ କେତୋଟି କଥା ପୂର୍ବରୁ କୁହାଯାଇଛି, ତେବେ ଶେଷରେ ଯେ ପ୍ରଦେଶମାନଙ୍କର ନିର୍ବାଚିତ ସରକାରମାନେ ଇସ୍ତଫା ଦେଲେ, ଏଇଟା ମନେଥିବ । ୧୯୩୭ ମସିହାରେ ହୋଇଥିବା ନିର୍ବାଚନରେ ଓଡ଼ିଶାରେ କଂଗ୍ରେସ ଦଳର ସରକାର ହେଲା । ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ ନୂଆ ଧରଣର ଦେଶୀ ଶିକ୍ଷା ପାଇଁ ଆଗ୍ରହ ଦେଖାଇଲେ । ଶରତ୍ ଚନ୍ଦ୍ର ମହାରଣା ପ୍ରମୁଖ କେତେକ ଶିକ୍ଷା ବିଭାଗୀୟ କର୍ମଚାରୀଙ୍କୁ ୱାର୍ଦ୍ଧା ପଠାଗଲା ଏ ବିଷୟରେ ଅଧିକ ଜ୍ଞାନ ସଂଗ୍ରହ କରିବାକୁ । ସେବାଗ୍ରାମଠାରେ ଗାନ୍ଧୀଜୀଙ୍କ ମାର୍ଗଦର୍ଶନରେ ଅଶାଦେବୀ ଓ ଆର୍ଯ୍ୟନାୟକମ୍ ମୌଳିକ ଶିକ୍ଷାର ପ୍ରୟୋଗ କରୁଥାଆନ୍ତି ।

ଦେଶୀ ସରକାର ସିନା 'ୱାର୍ଦ୍ଧାଶିକ୍ଷା'କୁ ଏତେ ଜୋର ଦେଉଥିଲେ, ତାଙ୍କ ପରେ ତାକୁ ଆଉ ବଳ ଯୋଗାଇବ କିଏ ? ଇଂରେଜ ସରକାରଙ୍କ ଦୃଷ୍ଟିରେ ତ ଏହା ଥିଲା 'ଅଯଥା ଶିକ୍ଷା' ଫଳରେ ଶାସନକଳର ସାହାଯ୍ୟ ଏହା ପଛରେ ଆଉ ରହିଲା ନାହିଁ । ତା' ବୋଲି ଏହି ଶିକ୍ଷାପଦ୍ଧତି କ'ଣ ମରିଗଲା ? ନାଁ, ନାନା ରକମର ବିପଦ ଆପଦ ଯୋଗୁଁ ବେଶି ଟାଣ ହେଲା । ବେସରକାରୀ ଉଦ୍ୟମରେ ନିଖିଳ ଉତ୍କଳ ମୌଳିକ ଶିକ୍ଷା (ହିନ୍ଦୀ ନାମ – ବୁନିୟାଦୀ ତାଲିମ) ପରିଷଦ ଏଠାରେ ଗଠନ କରାଗଲା । ତା'ର ପ୍ରଥମ ସଭାପତି ହେଲେ ଆଚାର୍ଯ୍ୟ ହରିହର । ସ୍ୱର୍ଗତ ବିଶ୍ୱନାଥ ଦାସ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ, ସ୍ୱର୍ଗତ ଗୁଣନିଧି ମହାନ୍ତି ଶିକ୍ଷାଭିମୁଖୀ ଦେଶଭକ୍ତ ପ୍ରମୁଖ ଏଥିରେ ସଭ୍ୟ ରହିଲେ ।

## (୩୨)

ଓଡ଼ିଶାରେ ନୂଆ ଢଙ୍ଗର ଶିକ୍ଷା ପଦ୍ଧତି ଚଳାଇବା ପାଇଁ ମୌଳିକ ଶିକ୍ଷା ପରିଷଦ ଗଢ଼ାଗଲା । ବହୁତ ଜଣାଶୁଣା ଲୋକ ତା'ର ସଦସ୍ୟ ରହିଲେ । ଗାଉଁଲି ମଳିମୁଣ୍ଡିଆ ଲୋକଙ୍କୁ ମଧ୍ୟ ସେଥିରେ ସଭ୍ୟ କରାଗଲା । ଏକାଥରକେ ଆରମ୍ଭରୁ ପରିଷଦର କାର୍ଯ୍ୟ ପ୍ରଦେଶ ସାରା ବ୍ୟାପିବା ସମ୍ଭବପର ହେଲା ନାହିଁ । ଏଣୁ ପ୍ରଥମେ ବରି ନିକଟବର୍ତ୍ତୀ ରାମଚନ୍ଦ୍ରପୁରଠାରେ କାର୍ଯ୍ୟର ନିଅଁ ପଡ଼ିଲା । ଯେଉଁ ଶିକ୍ଷକମାନେ ଆନ୍ଦୋଳନପାଇଁ ସରକାରୀ ଶିକ୍ଷକତା ଛାଡ଼ି ଏବେ କଅଣ କରିବେ ବୋଲି ଭାବୁଥିଲେ ଏବଂ ଗାନ୍ଧୀଜୀଙ୍କ ନୂଆ ଯୋଜନାକୁ ହୃଦୟର ସହିତ ମାନୁଥିଲେ, ସେମାନେ ଆସିଲେ । ସେମାନେ କେବଳ ଶିକ୍ଷକ ନଥିଲେ, ଜଣେ ଜଣେ ଆନ୍ଦୋଳନକାରୀ ଲୋକ ଥିଲେ ।

ବ୍ରିଟିଶ ସରକାରଙ୍କୁ ତଡ଼ିବାଲାଗି ପୁଣି ନୂଆ ସୈନିକ ସୃଷ୍ଟି କରିବାର କଳଘର ରୂପେ ସେମାନେ ଇସ୍କୁଲକୁ ଧରିନେଲେ । ଯାହା ହେଉ କାମ ଚାଲିଲା ।

ଆଖ ପାଖ ଗାଁର ପିଲାଏ ଆସି ପାଠ ପଢ଼ିଲେ । ଧୋଇଆ ଅଞ୍ଚଳ । ଲୋକଙ୍କ ହାତରେ ବେଶି ପଇସା ନାହିଁ, ବରିରେ ଯାହା ଖଣ୍ଡିଏ ମଧ୍ୟ-ଇଂରାଜୀ ସ୍କୁଲ ଯେ, ଖଣ୍ଡମଣ୍ଡଳର ପିଲେ, ଆସି ସେଇଠି ପାଠ ପଢ଼ନ୍ତି । ବୋର୍ଡ଼ିଂରେ ରଖାଇ ପାରିଲା ଭଳି ଯୁ' ବାପ-ମା'ଙ୍କର ନଥାଏ । ଏଣୁ ପିଲେ ଘରୁ ପଖାଳ ଖାଇ ୫/୬ ମାଇଲ ଦୂରରୁ ଆସି 'ମାଇନର' ଖଣ୍ଡକ ପାସ୍ କରନ୍ତି । ସେ ବିଦ୍ୟା ପୁଣି ଘାସକୁ ମୋଟ, ବେଣାକୁ ଛୋଟ । ପେଟରେ ତ ଯଥେଷ୍ଟ ଜ୍ଞାନ ପ୍ରବେଶ କରେନା । ପୁଣି ଗାଁର ମଳିମୁଣ୍ଡିଆ ଲୋକଙ୍କ ସଙ୍ଗେ ମିଶି ତାଙ୍କରି ସହିତ ବସି ପୁଣି ଆପଣାର ଧୋବ ଲୁଗାଟାକୁ ମଳି କରିବାପାଇଁ ପାଠୁଆ ପିଲାଙ୍କ ମନ ମରିଯାଏ । ନୂଆ ଅଳସୁଆ ଲୋକ ଏଇମିତି ବଢ଼ନ୍ତି ।

କିନ୍ତୁ ରାମଚନ୍ଦ୍ରପୁରର ଏଇ ସ୍କୁଲର ପିଲାଏ ରୀତିମତ ଖଟନ୍ତି । ବ୍ରାହ୍ମଣୀର ଉତ୍ତରପଟ କୂଳକୁ ଲାଗି ସ୍କୁଲର ବଗିଚା । ଆଗରୁ ଏଇଟା ଥିଲା ନିଶୂନ ଶ୍ମଶାନ । ଭୂତ ଖବିଶ ଏଠାକାର ମଶାଣି ହୁଡ଼ାରେ ନାଚ କରୁଥିଲେ । ସଞ୍ଜହେବା ପରେ, ପୂର୍ବରୁ କେହି ତେଣେ ଯାଉନଥିଲେ । କିନ୍ତୁ ସ୍କୁଲ ପିଲାଙ୍କ ହାତ ବାଜି ରାମଚନ୍ଦ୍ରପୁରର ଏଇ ମଲାବାଲି ପୁଣି ଚହଟିଲା । ପିଲାଏ ନାନାରକମର ଫସଲ କଲେ, ମଜାରେ ଖାଇଲେ । ଭଲ ଇସ୍କୁଲଟିଏ କରିଦେଇ ଚାରିଆଡ଼ୁ ବାହବା ପାଇବା ଉଦ୍ୟୋକ୍ତାମାନଙ୍କର ତ ଉଦ୍ଦେଶ୍ୟ ନ ଥିଲା । ଏଣୁ ତାହାକୁ ଏକ ଛାତ୍ରାବାସ ସ୍କୁଲ କରାଗଲା ନାହିଁ । କାରଣ ଭଲ ସ୍କୁଲ ହୋଇଥିବାରୁ ବାହାରର ଯେଉଁମାନେ ବେଶି ପଇସା ଖର୍ଚ୍ଚ କରିପାରିବେ, ତାଙ୍କରି ପିଲେ ଏଇ ସ୍କୁଲକୁ ଆସିବେ । ଆଖପାଖର ଗରିବ ପିଲାଙ୍କୁ ସୁବିଧା ମିଳିପାରିବ ନାହିଁ । ଏଣୁ ଗାଁ ପିଲା କେମିତି ବେଶି ପରିମାଣରେ ଆସିବେ, ପାଖଲୋକେ କିପରି ବେଶି ପ୍ରଭାବିତ ହେବେ- ଏହାକୁ ହିଁ ଆଗରେ ରଖି କାମ ଚାଲିଲା ।

୧୯୪୨ ମସିହାରେ ସ୍ୱାରାଜ ଆନ୍ଦୋଳନ ବେଳେ ବରି ଅଞ୍ଚଳରେ ଗୁଳିକାଣ୍ଡ ହେଲା । ସାଉଁଟି ମଳିକ ଭଳି ସାଧାରଣ ଲୋକେ ଶହୀଦ ହେଲେ । ରାମଚନ୍ଦ୍ରପୁର ସ୍କୁଲର ଶିକ୍ଷକମାନେ କ'ଣ, ଅନ୍ୟ ସ୍କୁଲ ମାଷ୍ଟ୍ରଙ୍କ ପରି ଅନୁଷ୍ଠାନକୁ ଜଗିବସନ୍ତେ ? ସେମାନେ ମଧ୍ୟ ଆନ୍ଦୋଳନ ଭିତରକୁ

ଡେଇଁ ପଡ଼ିଲେ । ଜେଲଗଲେ । ମଝିରେ ମଝିରେ ରାମଚନ୍ଦ୍ରପୁରର ଶିକ୍ଷକ ଓ ଅନୁଷ୍ଠାନ, ଉଭୟ ପ୍ରତି ପୋଲିସର ନଜର ରହୁଥାଏ ।

୧୯୪୦ ମସିହାରେ ପୁଲିସ ସାହାଯ୍ୟରେ ସ୍କୁଲ ଘରକୁ ପୋଡ଼ି ଦିଆଯାଇଥିଲା । ଅନୁଷ୍ଠାନର କୁଳପତି, ପରିଷଦର ସଭାପତି ଆଚାର୍ଯ୍ୟ ମହାଶୟ ସେ ସମୟକୁ ଯାଇ ଜେଲରେ । ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ ଅଧିକାଂଶ ବନ୍ଦୀ । ଶିକ୍ଷକମାନେ ମଧ୍ୟ ଗିରଫ । ତଥାପି ଅନେକ ପିଲା ଜିଦ୍ କଲେ ଯେ ସେମାନେ ସରାକାରୀ ସ୍କୁଲରେ ପଢ଼ିବେ ନାହିଁ । ସ୍ୱାଧୀନତା ଲାଗି ଲଢୁଥିବା ଅନେକ ବାପା ମା' ବି ଚାହିଁଲେ ନାହିଁ- ସେମାନଙ୍କ ପିଲେ ଯାଇ ଇଂରେଜ ସରାକାରର ଗୋଲାମ ହେବାକୁ ପାଠ ପଢ଼ନ୍ତୁ । ମନର ଏଇ ବଳ, ଏଇ ଆଶୀର୍ବାଦ ଥିଲା ଅନୁଷ୍ଠାନ ପଛରେ । ଶ୍ରୀମତୀ ରମାଦେବୀ ଓ ଶ୍ରୀ ଈଶ୍ୱର ଲାଲ ବ୍ୟାସ ଯେତେବେଳେ ଅନୁଷ୍ଠାନ ପାଇଁ ଚାନ୍ଦା କରିବାକୁ ବାହାରୁଥିଲେ- ଲୋକଙ୍କ ଦାନରେ ତାଙ୍କର ଥଳୀ ପୁରି ଯାଉଥିଲା । କାରଣ ଏ ଶିକ୍ଷା, ଏ ଅନୁଷ୍ଠାନ ପଛରେ ଗାନ୍ଧୀଜୀଙ୍କର ଆଶୀର୍ବାଦ ଥିଲା । ଖାଲି ସେତିକି ନୁହେଁ, ସ୍ୱାଧୀନତା ଲାଗି ଲଢୁଥିବା ସବୁ ଶ୍ରେଣୀୟ ଲୋକଙ୍କର ସଦିଚ୍ଛା ଏହା ପଛରେ ଥିଲା ।

ରାଜନୈତିକ ବନ୍ଦୀମାନେ ୧୯୪୪ରେ ଖଲାସ ହେବାରୁ ଆଚାର୍ଯ୍ୟ ମହାଶୟ ମଧ୍ୟ ମୁକୁଳିଲେ । ଏଥର ତାଙ୍କର ବହୁତ ସମୟ ଅତିବାହିତ ହେଲା ରାମଚନ୍ଦ୍ରପୁର ଓ ବରି ଅଞ୍ଚଳରେ । ସେଠାରେ ତାଙ୍କରି ଉଦ୍ୟମ ଯୋଗୁଁ ଗାଁ ସଫେଇ, ହରିଜନ ସେବା ସାଙ୍ଗକୁ ନୂଆ ମୌଳିକ ଶିକ୍ଷା ପ୍ରତି ଲୋକଙ୍କର ଆଗ୍ରହ ବଢ଼ିଲା ।

ଖାଲି ବରି ନୁହେଁ- ମଝିରେ ମଝିରେ ସାରଙ୍ଗଯୋଡ଼ିକୁ ସେ ବି ଯାଆନ୍ତି । ସାରଙ୍ଗଯୋଡ଼ିକୁ କେନ୍ଦ୍ରକରି ତାଙ୍କରି କାର୍ଯ୍ୟକ୍ରମ ପୁରୀ ସହର ସବ୍‌ଡିଭିଜନ୍ ତଥା ପୁରୀ ଜିଲା ଯାଏ ବ୍ୟାପିଥାଏ । ସେଠି ହୋତା ମହାଶୟ ଥାଆନ୍ତି ।

## (୩୩)

ସାରଙ୍ଗଯୋଡ଼ି ହେଉଛି ଗୋଟିଏ ଗାଁ । ଭାରତର ଅସଂଖ୍ୟ ଗାଉଁଲି ଲୋକଙ୍କ ଭଳି ସେଠାକାର ଲୋକମାନେ ମାଛି, ଡାଆଁସ କାମୁଡ଼ା ସହି ଭୋକ, ଉପାସରେ ଥାଆନ୍ତି । କିନ୍ତୁ ସାରା ଓଡ଼ିଶାର ଆଖି ସମୟେ ସମୟେ ସେଆଡ଼କୁ ଟାଣି ହୋଇଯାଏ । ତା'ର କାରଣ ହେଉଛି ନାନା ରକମର ନୂଆ କାମ ସବୁ ସେଠାରେ ଆରମ୍ଭ କରାଯାଉ ଥାଏ । ପୁଣି ସେ କାମ ସବୁକୁ ନେଇଆଣି ଥୋଇବା ଲାଗି ଟାଣୁଆ ଲୋକ ପଣ୍ଡିତ କୃପାସିନ୍ଧୁ ହୋତା ଏବଂ ତାଙ୍କର ବିଧବା ଭାଇବୋହୂ ସୁନାମଣି ଦେବୀ ସେ ଗାଁରେ ଆଶ୍ରମ କରିଥାଆନ୍ତି ।

ଏଇମିତି ଗୋଟେ ନୂଆ କାମ । କାମଟା ଖୁବ୍ ସହଜ- କିନ୍ତୁ ନୂଆ । ତାକୁ ବାହାର କଲେ କିଏ ? ଉପାଧିଧାରୀ କୌଣସି ଅସାଧାରାଣ ଲୋକ ନୁହନ୍ତି — ମଳିମୁଣ୍ଡିଆ ଲୋକଙ୍କ ସହିତ ଜୁଡୁବୁଡୁ ହୋଇଥିବା ଦି'ଜଣ — ଆଚାର୍ଯ୍ୟ ମହାଶୟ ଓ ହୋତା ମହାଶୟ । ସେ କାମଟା କ'ଣ ? ତେବେ ଶୁଣନ୍ତୁ —

ପୁରୀ ଜିଲାର ସଦର ସବ୍-ଡିଭିଜନଟାରେ ଛୋଟ ଛୋଟ ପୋଖରୀ ସଂଖ୍ୟା ଅନେକ । ସେସବୁ ଭିତରୁ କେତେକ ହୁଏତ ନୂଆ ହୋଇ କରାଯାଇଥିବ, କିନ୍ତୁ ତା'ଭିତରୁ ଅନେକର ଇତିବୃତ୍ତି ଗାଁର ବୁଢ଼ା ବୁଢ଼ା ଲୋକେବି ବତାଇ ପାରିବେ ନାହିଁ । ସେସବୁ ପୋଖରୀ ଭିତରେ ନାନା ରକମର ଦଳ ଜମାଟ ବାନ୍ଧି ରହିଥାଏ । ହାତେ କି ଦୁଇହାତ ପାଣି ଉପରେ ଏପରି ପରସ୍ତେ ଲେଖାଏଁ ବନ୍ଧ ମାଡ଼ିଥାଏ ଯେ, ଜଣାପଡ଼େ ନାହିଁ ତଳେ ପାଣି ଅଛି କି ନାହିଁ । ଗାଁ ଲୋକେ ଏପରି ଅଭ୍ୟସ୍ତ ହୋଇ ଥାଆନ୍ତି ଯେ, ତା'ରି ଉପରେ ଶଗଡ଼, ଗୋରୁ, ଛେଳି ଆଦି ନିର୍ବିକାର ମନରେ ଚରାନ୍ତି ।

ସିଧା ସଳଖ ଭାବେ ଦେଖିବାକୁ ଗଲେ ଏଇ ଦଳଗୁଡ଼ିକ ଲୋକଙ୍କ ତେଲଲୁଣର ଦୁନିଆରେ ବେଶି ଅସୁବିଧା କରେ ବୋଲି ଦିଶିବ ନାହିଁ । କିନ୍ତୁ ଟିକିଏ ବଙ୍କା ନଜରରେ ଆଚାର୍ଯ୍ୟ ମହାଶୟ ଏଇ ଦଳକୁ ଦେଖିଲେ । ମାତ୍ର ସେ ଦେଖିଲେ ଏଇଦଳ ଭିତରେ ଆଶ୍ରୟ ନେଇ ମଶାମାନଙ୍କର ସାମ୍ରାଜ୍ୟ ଗଢ଼ିଉଠିଛି । ବଡ଼ ସହରଟିଏ ପାଖରେ ଥିଲେ ଲୋକଙ୍କର ପଇସା ଯେମିତି ନାନା ବାଟରେ ତେଣିକି ପଳାଏ, ସେହିପରି ମଶାମାନେ ଲୋକଙ୍କୁ ଅନେକ ପ୍ରକାରେ ଶୋଷୁଛନ୍ତି । ବିଶେଷକରି ବାତଜର ଏବଂ ମ୍ୟାଲେରିଆ ଜରର ମୂଳକାରଣ ହେଲା ମଶା । ତାହା ଛଡ଼ା ଦଳପୁଳାଏ କେଉଁଠି କେମିତି ପଚି ଗଲେ, ସେ ଯେଉଁ ଆଇଁଷିଆ ଗନ୍ଧ ବାହାରେ, ସେଥିରେ କି ପେଟକୁ ଭାତ ଯିବ ?

ଏଇକଥା ପଣ୍ଡିତ ମହାଶୟଙ୍କୁ (ହୋତା ମହାଶୟଙ୍କୁ ସେ ପଣ୍ଡିତ ମହାଶୟ ବୋଲି ଡାକନ୍ତି) ସେ ସୂଚେଇଲେ । କଥାଟା ତାଙ୍କ ମନକୁ ଖୁବ୍ ପାଇଲା । ତାଙ୍କ ଗାଁ ବିଶ୍ୱନାଥପୁରଠାରେ ଏଇମିତି ଗୋଟେ ଦଳୁଆ ପୋଖରୀକୁ ତ ସେ ଗାଁ ଭେଣ୍ଡିଆଙ୍କୁ ଲଗେଇ ପିଲାଦିନେ ପୋତେଇ ଥିଲେ । ଏଣୁ ବିଚାର ପଡ଼ିଲା କ'ଣ କରାଯିବ । ଶେଷରେ ଉଭୟେ ଠିକ୍ କଲେ ଯେ, ପୁରୀ ସଦର ସବ୍-ଡିଭିଜନ ଲାଗି ଗୋଟେ ଦଳ କଢ଼ା ଦିନ ଠିକ୍ କରାଯିବ । ଲୋକେ ଯେମିତି ହୋରୀ, ରଜ କିମ୍ୱା ଦୀପାବଳି ଉତ୍ସବ ପାଳୁଛନ୍ତି, ସେଇମିତି ଗାଁରେ ଏକ ଉତ୍ସବ ହେବ । ଲୋକେ ସେଥିରେ ଅବିର ଫୋପାଡ଼ିବେ ନାହିଁ କି ବାଣ ଫୁଟେଇବେ ନାହିଁ । ନିଜର ଶତ୍ରୁ 'ମଶା'କୁ ତଡ଼ିବେ । ନଜି ଗାଁ ଭିତରେ ରହିଥିବା ପୋଖରୀରୁ ପୁରୁଣା ବନ୍ଧସବୁ କାଢ଼ିବେ ।

ଉଭୟଙ୍କ ଭିତରେ ଆଲୋଚନା ଆହୁରି ଚାଲିଲା । ହୋତା ମହାଶୟେ କହିଲେ, ''ଆଚ୍ଛା, ଗାଁର ଟୋକାମାନେ ଏ କାମରେ ଲାଗିବେ । ଏ ତ କିଛି ଘଣ୍ଟା ଅଧ ଘଣ୍ଟାର କଥା ନୁହେଁ, ଗୋଟାଏ କି ଦୁଇଟା ଓଳି ମଧ ଲାଗିପାରେ । ଏତେ ସମୟ ଦଳୁଆ ପାଣିଟା ଭିତରେ ପଶି ରହିଲେ ଦେହ ହାତ କୁଣ୍ଡେଇ ହେବ । ଏଣୁ ଟିକିଏ ଟିକିଏ ତେଲ ସେମାନଙ୍କ ଲଗାଇବା ପାଇଁ ବ୍ୟବସ୍ଥା ହେବା ଦରକାର ।'' ଉଭୟେତ ଦିନେ ଯୁବକ ଥିଲେ । ସେ ଦିନର କଥାକୁ ଖିଆଲ କରି ଆଚାର୍ଯ୍ୟ ମହାଶୟ କହିଲେ– ''ଟୋକାଗୁଡ଼ାକ ଏତେ ସମୟ ପାଣିରେ ପଶି ରହିବେ- ଟିକିଏ ପାଟି ଉଷୁମ କରିବେ ନା । ଏଣୁ ପୁଞ୍ଜାଏ ପୁଞ୍ଜାଏ ମୁଢ଼ି ସେମାନଙ୍କ ଲାଗି ବ୍ୟବସ୍ଥା କରାଯାଉ ।''

ପୁଞ୍ଜାଏ ମୁଢ଼ି ଆଉ ଟିକିଏ ତେଲ ! ଏଇ ଏତକ ବା କେତେ ! ପୁରୀ ଜିଲା ବୋର୍ଡ଼ ନିଜ ଅଞ୍ଚଳର ଲୋକଙ୍କ ସ୍ୱାସ୍ଥ୍ୟ ଭଲ କରିବା ପାଇଁ ଏତକ ବ୍ୟବସ୍ଥା କରିଦେବା ଉଚିତ୍ । କାରଣ ମଶା ନ

ହେଲେ ତ ବାରଅଣା ରୋଗର ବୀଜ ବୁଡ଼ିଯିବ । ଏଇଆ ଭାବି ଉଭୟେ ପୁରୀକୁ ଚାଲିଲେ ।

ପୁରୀ ଜିଲାବୋର୍ଡ଼ର ଚେୟାରମ୍ୟାନ୍ ଥିଲେ ଲୋକନାଥ ମିଶ୍ର ଉଭୟଙ୍କର ବନ୍ଧୁ । ପୁରୀ ସିଭିଲ ସର୍ଜନ ଡ. ମହାଦେବ ମିଶ୍ର ପୁଣି ଆଚାର୍ଯ୍ୟ ମହାଶୟଙ୍କର ଛାତ୍ର । ବାଟରେ ଯାଉଁ ଯାଉଁ ପ୍ରଥମେ ସିଭିଲସର୍ଜନ ବାବୁ ଦେଖାହେଲେ । ଉଭୟଙ୍କର ତ ମନ ଯାଇ ରହିଛି ଦଳ କଢ଼ା କଥାରେ । ଦେଖାହେବା ମାତ୍ରେ, ଯେମିତି ସେ ପ୍ରଣାମ କରିଛନ୍ତି, ଦୁହେଁ ଯାକ ତାଙ୍କୁ ଏଇ ଦଳକଢ଼ା କଥା କହିଲେ । କାରଣ ଜିଲାବୋର୍ଡ଼ର ସେ ହେଉଛନ୍ତି ସ୍ୱାସ୍ଥ୍ୟ ପରାମର୍ଶଦାତା । ତା'ପରେ ତାଙ୍କୁ ମିଶେଇ ତିନିଜଣ ଯାକ ଚେୟାରମ୍ୟାନ୍‌ଙ୍କ ଘରକୁ ଗଲେ ।

ତିନିଜଣଙ୍କୁ ଏକତ୍ର ଦେଖି ଚେୟାରମ୍ୟାନ ମହାଶୟ ନିଶ୍ଚିତ ଭାବେ ଠଉରାଇ ନେଲେ ଯେ କିଛି ନା କିଛି ଗୋଟାଏ କଥା ଯା ଭିତରେ ଅଛି । ତା'ନହେଲେ ଅକାଳେ ସକାଳେ ଏମିତି ଆସି ଥାଆନ୍ତେ କାହିଁକି ? ଘଟଣା କ'ଣ ?- ବୋଲି ଯେମିତି ଲୋକନାଥ ମିଶ୍ର ପଚାରିଛନ୍ତି ଉଭୟେ ତାଙ୍କୁ ଦଳକଢ଼ା କଥା କହିଲେ । ଆଚାର୍ଯ୍ୟ ମହାଶୟ ଓ ପଣ୍ଡିତ ମହାଶୟ ଯେଉଁଥିରେ ଏକମତ, ତାକୁ ଖୁଣିବାର କ'ଣ ଅଛି ? କିନ୍ତୁ ଏଥିଲାଗି ଯେତିକି ପଇସା ଖର୍ଚ୍ଚ ହେବ — ତାହା ଆସିବ କୁଆଡୁ ? ଜିଲାବୋର୍ଡ଼ଙ୍କ ସ୍ୱାସ୍ଥ୍ୟ ପାଣ୍ଠିରେ ଏତେ ଟଙ୍କା ଅଛି ତ ? — ଚେୟାରମ୍ୟାନ୍ ବାବୁ ଭାବିବାକୁ ଲାଗିଲେ ।

ଜିଲାବୋର୍ଡ଼ର କାମ କରିବାର ଏକ ସୀମା ଅଛି । ତା'ଠୁଁ ବାହାରକୁ ସେ ଯାଇ ପାରିବ ନାହିଁ । ଏଣୁ ଅସୁବିଧାତକ ଚେୟାରମ୍ୟାନ୍ ମହାଶୟ ଉଭୟଙ୍କୁ ଜଣାଇ ଦେଲେ । ମାତ୍ର ସୂଚନାଟା ଯେ ଅକାଟ୍ୟ, ଏଥିରେ ତାଙ୍କର ଭିନ୍ନମତ ନ ଥିଲା ।

ଚେୟାରମ୍ୟାନ୍‌ଙ୍କ ଅପାରଗତା ଦେଖି ଏଥର ଉଭୟେ ଫେରିଲେ । ପୁରୀ ସଦର ସବ୍-ଡିଭିଜନରୁ ଦଳ କାଢ଼ିବାକୁ ହେବ — ଏଇ ଟାଣ କିନ୍ତୁ ମନରେ ବସା ବାନ୍ଧି ରହିଲା । ତାକୁ କାମରେ ଲଗାଇବାକୁ ସେମାନେ ଲାଗିଲେ ।

## (୩୪)

ପୁରୀ ଜିଲାବୋର୍ଡ଼ର ଚେୟାରମ୍ୟାନ ଦଳକଢ଼ା ପାଇଁ ଆର୍ଥିକ ସାହାଯ୍ୟ ଦେଇ ପାରିଲେ ନାହିଁ । ଏଥିରେ ଆଚାର୍ଯ୍ୟ ମହାଶୟ ଓ ହୋତା ମହାଶୟଙ୍କର ବ୍ୟସ୍ତ ହେବାର କିଛି ନ ଥିଲା । ପୁଣି କେଉଁ ବାଟରେ ତାଙ୍କଠାରୁ ସହଯୋଗ ମିଳିବ, ସେଇ କଥା ଭାବିଲେ ।

କଥାରେ ଅଛି, ''କହିବାରେ ଦରିଦ୍ର ହେବ କାହିଁକି ?'' ପରିଶ୍ରମ କିମ୍ବା ପଇସା ଦେଲେ ସିନା ବାଧା ଲାଗିବ । କିନ୍ତୁ ପଦେ ଆଶ୍ୱାସନା କଥା କହିଲେ ପଇସା ଲାଗିବ ନାହିଁ । ସେହିପରି ଯଦି ଜିଲାବୋର୍ଡ଼ର ସଭ୍ୟମାନେ ଏବଂ ସରକାରଙ୍କ ସମସ୍ତ କର୍ମଚାରୀ ଗାଁ ଗାଁ ବୁଲି ଲୋକଙ୍କୁ ଖାଲି ଦଳକଢ଼ା କଥାର ପରାମର୍ଶ ଦିଅନ୍ତି, ତେବେ କାମଟା ତ ଅତି ସହଜରେ ଉଠିଯିବ । ଯିଏ ଯୁଆଡ଼େ ଯିବେ, ପୁରୀ ସଦର ସବ୍-ଡିଭିଜନରେ ଖାଲି ପଚାରି ଦେବେ ଯେ, ''କିହୋ, ତମ ଗାଁରେ ଦଳକଢ଼ା କଥା କ'ଣ ହେଲା ?''

ସାରଙ୍ଗଯୋଡ଼ିରେ ଆଚାର୍ଯ୍ୟ ହରିହର ଏବଂ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଭିତରେ ଏଇ

ମର୍ମରେ ଆଲୋଚନା ହେଲା । ଆଲୋଚନର ନିଷ୍ପତ୍ତି ଏଥର ପୁଣି ପୁରୀ ଚାଲିଲା । କଥାଟା ପୁରୀରେ ସମସ୍ତେ ପସନ୍ଦ କଲେ । ପ୍ରତି ଗାଁରେ ଦଳ କଢ଼ା କଥାର ପ୍ରଚାର କରିବା ଲାଗି ସରକାରୀ ମହଲରେ ଲୋକେ ଲାଗିଲେ । ନିର୍ବାଚିତ ଆସେମ୍ବ୍ଲି, ଜିଲାବୋର୍ଡ଼ ଓ ଲୋକାଲବୋର୍ଡ଼ର ସଦସ୍ୟ ଗଣ ମଧ ସହଯୋଗ କଲେ । ଉଦ୍ଦେଶ୍ୟ ରହିଲା-ପ୍ରଚାରଟା ଖୁବ୍ ଭଲ ଭାବେ ହୋଇଯିବା ପରେ ଶେଷରେ ଦଳକାଢ଼ିବା ଲାଗି ଗୋଟିଏ ଦିନ ଘୋଷଣା କରି ଦିଆଯିବ ।

କିନ୍ତୁ କେଇଦିନ ପରେ ଗୋଟିଏ ଗାଁରେ ଦେଖିଲା ବେଳକୁ ସେଠାରେ ସମସ୍ତ ଦଳ ଉଠି ଯାଇଛି । ଗାଁ ଲୋକେ ପ୍ରକାଣ୍ଡ ଗଦାରେ ଦଳ ସବୁ ଜମା କରିଛନ୍ତି । ଫଳରେ ପୋଖରୀ ଭିତରଟା ଦିଶୁଛି କାଚକେନ୍ଦୁପରି । ତା'ଛଡ଼ା ପାଖ ଆଖ ଗାଁରେ ଦଳ କଢ଼ା ପାଇଁ ଅଳ୍ପବହୁତ ଉଦ୍ୟମ ଆରମ୍ଭ ହୋଇଯାଇଛି । ଦଳ କାଢ଼ିବାକୁ ଗାଁ ଲୋକଙ୍କ ପାଇଁ ଆଉ ଦିନ ଠିକ୍ କରାଯିବ କ'ଣ ! ଦଳକଢ଼ା ତ ଆରମ୍ଭ ହୋଇଗଲାଣି । ଏଣୁ ଯେଉଁ ଗାଁରେ କାମ ସରିଲାଣି, ତାହାରି ଖବର ଖାଲି ନେଇ ଅନ୍ୟ ଗାଁମାନଙ୍କରେ ପହଞ୍ଚେଇବା କଥା । ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ହୋତା ଏଇ ଖବର ଦେବା କାମ କଲେ । ପ୍ରାୟ ପନ୍ଦର ଦିନ ଭିତରେ ପୁରୀ ସଦର ସବ୍-ଡିଭିଜନଟା ଦଳମୁକ୍ତ ହୋଇଗଲା ।

ଏହା ଦେଖି ସମସ୍ତେ ତାଟକା ହୋଇଗଲେ । ନିଜେ ପ୍ରଦେଶର ମୁଖ୍ୟମନ୍ତ୍ରୀଙ୍କ ସହିତ ଅନ୍ୟ ମନ୍ତ୍ରୀମାନେ ଦଳକଢ଼ା ବ୍ୟାପାର ଦେଖିବାକୁ ଆସିଲେ । ଆଚାର୍ଯ୍ୟ ମହାଶୟ ଓ ହୋତା ମହାଶୟଙ୍କ ହାତରେ ଏପରି କାମ ଦେଖି ସେମାନେ ଆଶ୍ଚର୍ଯ୍ୟ ହେଲେନାହିଁ, କିନ୍ତୁ ଲଜ୍ଜା ପାଇଲେ । କାରଣ ପୁଅ, ପୁତୁରା ବା ଛାତ୍ର ସ୍ତରରଲୋକ ଥାଉଁ ଥାଉଁ ବୁଢ଼ା ବୟସରେ ଦି'ଟା ଲୋକ ଯେ ଗାଁକୁ ଗାଁ ବୁଲି ଏପରି କାଣ୍ଡ କରିଛନ୍ତି, ଏଇକଥା ସେମାନଙ୍କୁ ଲଜ୍ଜିତ କଲା । ନିଜେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ବିଧାନସଭାର ସଦସ୍ୟମାନଙ୍କୁ ଏଇ କଥାର ସମ୍ପୂର୍ଣ୍ଣ ଜ୍ଞାନ ଦିଆଇବା ପାଇଁ ଦିନେ ଉଭୟଙ୍କୁ ନିମନ୍ତ୍ରଣ କଲେ । ଏ ହେଲା ୧୯୬୪ ମସିହାର କଥା ।

ମଣିଷ ଅନେକ କଥା ଦେଖେ ଏବଂ ଆହୁରି ଅନେକ କଥା ସେ ଦେଖି ମଧ ଦେଖେନା । ବେଳେବେଳେ କୌଣସି ଏକ ଅତି ସାମାନ୍ୟ ଘଟଣା ବି ତାକୁ ଖୁବ୍ ବେଶି ପ୍ରଭାବିତ କରିଦିଏ ।

ସେହିପରି ଦିନେ ସକାଳ ଓଳି ପ୍ରାୟ ୧୦ଟା ବେଳକୁ ଆଚାର୍ଯ୍ୟ ମହାଶୟ କୁଆଡୁ ବୁଲା ବୁଲି କରି ଆସି ପିଣ୍ଡାରେ ବସି ଥାଆନ୍ତି । ସାରଙ୍ଗଯୋଡ଼ି ଆଶ୍ରମରେ ଗୋଟିଏ ଗାଈଥାଏ । ତା'ର ଥାଏ ଆଉ ଗୋଟିଏ ରୋଗୀଣା ବାଛୁରୀ । ଅନ୍ୟମାନଙ୍କ ପଲରେ ମିଶିଲେ, କାଳେ କିଏ ମାରିବ ବୋଲି ତାକୁ ଆଶ୍ରମରୁ କେହି ଛାଡ଼ନ୍ତି ନାହିଁ । ସେ ବନ୍ଧା ହୋଇ ରହିଥାଏ । ଗୋଟିଏ ମାଟି ବାସନରେ କିଛି ପେଜ ଆଉ କିଛି ତୋରାଣି ଥୁଆ ହୋଇଥାଏ ତା' ଆଗରେ ।

ଫିଟିଯାଇ ଚରୁଥିବା ତା' ମା'ଟି କେମିତି କୁଆଡୁ ପଶି ଆସିଲା ।

ଦେଖିଲା ଯେ ଛୁଆଟା ଆଗରେ କିଛି ଖାଦ୍ୟ ରହିଛି । ପଶୁ ତ ! ଏଣୁ ଶିଙ୍ଗରେ ଭୁଷାଟାଏ ଯେମିତି ଚଢ଼େଇଛି, ବାଛୁରୀ ବିଚରା ଆଡ଼େଇ ହୋଇଗଲା । ନିର୍ବିକାର ଭାବେ ସେତକ ଚାଟି

ଚୁଟି ସଫା କରିଦେଲା ତା'ର ମା' । ଏ ଦୃଶ୍ୟ ପିଣ୍ଡା ଉପରେ ବସିଥିବା ଆଚାର୍ଯ୍ୟ ମହାଶୟ ଦେଖିଲେ ।

ଗାଈ ପଳେଇଲା । ବାଛୁରୀ ଠିଆ ହୋଇ ରହିଲା ସେଇମିତି । ଆଗରୁ ଏ ଦୃଶ୍ୟ କେତେ ଘଟିଥିବ । ତା'ପରେ ଆହୁରି ଏମିତି ଅନେକ ଘଟିଛି । ଘଟିବ । ସମୟ ରହିଲା ନାହିଁ । ପଲକ ପଡ଼ିବା ଆଗରୁ ପଳେଇଲା । କିନ୍ତୁ ସେଦିନ, ସେଇ ସମୟର ସେଇ ଦୃଶ୍ୟରେ ପଶୁ ଜାତିର ହିଂସ୍ରତା କଥା ସବୁଦିନ ଲାଗି ଆଚାର୍ଯ୍ୟ ମହାଶୟଙ୍କ ଛାତିରେ ଲେଖି ହୋଇ ରହିଲା । ଗାଁ ଗହଳିର ଲୋକଙ୍କ ଆଗରେ ସେ ଏଇ ଘଟଣାର ଉଲ୍ଲେଖ ବହୁବାର କରିଥିବାର ଦେଖାଯାଇଛି ।

ସାରଙ୍ଗଯୋଡ଼ି ଆଶ୍ରମରେ କେତେକ ଝିଅଙ୍କୁ ନେଇ ଏକ ଶିକ୍ଷାକେନ୍ଦ୍ର ଚାଲିଥାଏ । ଆଖପାଖ ଗାଁରେ ଖଦୀ, ହରିଜନ ସେବା ପ୍ରଭୃତି କାମରେ ସେମାନେ ସହଯୋଗ କରନ୍ତି । ଆଚାର୍ଯ୍ୟ ମହାଶୟ ସେମାନଙ୍କୁ ପଢ଼ାନ୍ତି ।

ରଥଯାତ୍ରାରେ ସେବା କରିବା ତାଙ୍କର ଏକ ଅଭ୍ୟାସ । ତାହାଛଡ଼ା ବିପଦ ଆପଦରେ ଲୋକଙ୍କୁ ସାହାଯ୍ୟ କରିବାଲାଗି ପୁରୀରେ ଏଇଥିପାଇଁ ପରା 'ସେବା ସମିତି' ଗଢ଼ାଯାଇଥିଲା ।

## (୩୫)

ଅନେକ କହନ୍ତି କଳିଷଠା ଷାଠିଏ । ଅର୍ଥାତ୍ ଷାଠିଏ ବର୍ଷ ପରେ ଜଣେ ଲୋକ ଟାଣୁଆ ହୋଇ ରହି ପାରେନା । ଏପରିକି ଷାଠିଏ ବର୍ଷ ଡେଇଁଲେ ଅନେକ ବୁଝିଲା ଶୁଝିଲା ଲୋକ ନିଜକୁ ବୁଢ଼ା, ରୋଗା, ନପାରିଲା କିମ୍ୱା ଅସହାୟ ତାଲିକା ଭୁକ୍ତ କରି ହତାଶ ହୁଅନ୍ତି । ସେମାନଙ୍କର ନିଜଠୁଁ ବିଶ୍ୱାସ ହଜିଯାଏ ।

ଇଏ ହେଉଛି କେତେବର୍ଷ ତଳର କଥା । ସେତେବେଳକୁ ଯୁଦ୍ଧ ବଜାର । ପୁରୀ ରଥଯାତ୍ରାକୁ ମେହେନ୍ତରଙ୍କର ଅଭାବ ପଡ଼ିଥାଏ । ମ୍ୟୁନିସିପାଲିଟିର ଦରମାଠାରୁ ବହୁତ ବେଶି ପଇସା ମିଳିବା ଫଳରେ ମେହେନ୍ତରମାନେ ସୈନ୍ୟବାହିନୀରେ କାମ କରିବାକୁ ଚାଲିଯାଇଥାଆନ୍ତି । ବାକି ଥାଆନ୍ତି କେବଳ ସ୍ତ୍ରୀ ଲୋକମାନେ ।

ରଥଯାତ୍ରାକୁ ଭାରତର ସବୁ ଅଞ୍ଚଳରୁ ଲୋକ ଆସନ୍ତି । ଏଣୁ ପୁରୀ ସହରରେ ଭଡ଼ାଘର ବ୍ୟତୀତ ଭଦ୍ରଲୋକଙ୍କ ପିଣ୍ଡାରେ ବି ଜାଗା ନଥାଏ ।

ରୀତିମତ ସଫାଇର ବ୍ୟବସ୍ଥା ନକଲେ, ହଇଜା ଲାଗିବା ନିଶ୍ଚିତ । ପୁଣି ସେଇ ହଇଜା ମାଡ଼ିଚାଲେ ପୁରୀଠାରୁ ବାଲେଶ୍ୱର ଯାଏ । ଜଗନ୍ନାଥ ସଡ଼କରେ ହଇଜା ମଞ୍ଜି ବୁଣା ହୋଇଚାଲେ । ଏପରିକି ରାସ୍ତା କଡ଼ରେ ମଧ ସିଧାସଳଖ ସ୍ୱର୍ଗପ୍ରାପ୍ତିର ଦୃଶ୍ୟ ଦେଖିବାକୁ ମିଳେ । ଓଃ, କି ବିକଳ ହେଉ ଥାଆନ୍ତି ସେମାନେ । ଏକଥା ଦେଖି ଆଚାର୍ଯ୍ୟ ମହାଶୟଙ୍କ ଦେହ ସହିଲା ନାହିଁ । ପୁରୀ ସହର ଭିତରୁ ସେବା ସମିତି ଜରିଆରେ ଉତ୍ସାହୀ ଯୁବକମାନଙ୍କୁ ସେ ସଂଗ୍ରହ କରି ଚାଲିଲେ । ଉଦ୍ଦେଶ୍ୟ ହେଲା- ରଥଯାତ୍ରାରେ ମେହେନ୍ତରମାନଙ୍କ କାମକୁ ତୁଲାଇ ନେବା । ସତକୁ ସତ, ବହୁତ ସ୍କୁଲ କଲେଜର ଛାତ୍ର ତଥା ସମାଜସେବୀ ଯୁବକ ଏ କାମକୁ ବାହାରି ପଡ଼ିଲେ । କିନ୍ତୁ ସମସ୍ତେ

କହିଲେ ଯେ, ''ଆଚାର୍ଯ୍ୟ ମହାଶୟ ଲୋକ ଯୋଗାଡ଼ କରି ଦିଅନ୍ତୁ । ମାତ୍ର ନିଜେ କିଛି ନ କରନ୍ତୁ ।''

ଷାଠିଏ ବରଷ ପରେ ବି ଜଣେ ଲୋକ ଟୋକାଗୁଡ଼ାଙ୍କ ସାଙ୍ଗରେ ଖଟିବା ସେମାନଙ୍କୁ ଭଲ ଲାଗିଲାନି । କିନ୍ତୁ ଆଚାର୍ଯ୍ୟ ମହାଶୟ କି ଛାଡ଼ିବା ଲୋକ । ସେ କହିଲେ, ''ଆଚ୍ଛା, ତୁମେ ସବୁ କର । ଦରକାର ହେଲେ ମୁଁ କରିବି, ନହେଲେ ନାହିଁ ।'' ଅନ୍ୟମାନେ ଏଥିରେ ଟିକିଏ ଆଶ୍ୱସ୍ତ ହେଲେ ।

ପୁରୀ ସହରକୁ ସାହି ଅନୁସାରେ ଖଣ୍ଡ ଖଣ୍ଡ କରି ସ୍ୱେଚ୍ଛାସେବକମାନେ ବାଣ୍ଟି ନେଇଗଲେ । କେଉଁଠି ଯାତ୍ରୀମାନେ ପଇଡ଼ ପିଇ ଫାଳଗୁଡ଼ାକ ପାହାଡ଼ ଭଳି ଜମା କରିଛନ୍ତି ତ ଆଉ କେଉଁଠି ବିଚାରୀ ମଲାକୁତିଟାଏ ଦାନ୍ତ ନେଫେଡ଼ି ପଡ଼ିଛି । ଏଇଭଳି ବାୟୁମଣ୍ଡଳ ଭିତରେ ସ୍ୱେଚ୍ଛାସେବକମାନେ କୋଦାଳ ଏବଂ ଝାଡୁଧରି କାମ କରି ଚାଲିଲେ । ସମସ୍ତେ ତ ଏ କାମରେ ଅଭ୍ୟସ୍ତ ନୁହନ୍ତି । ମଜା ଚାଖିବା ଲାଗି କେତେକ ସିନା ସ୍ୱେଚ୍ଛାସେବକ ତାଲିକାରେ ନାମ ଲେଖାଇ ଦେଇଥିଲେ, କିନ୍ତୁ ଏଇ ଅବସ୍ଥାରେ ଯେ ପଡ଼ିବାକୁ ହେବ, ଏ ବିଶ୍ୱାସ ଅନେକଙ୍କର ଥିଲାନି । ତେଣୁ ସେମାନଙ୍କର ମାନସିକ ଜୋର୍ ସବୁବେଳେ ସମାନ ରହିଲା ନାହିଁ । ଝିପିଝିପି ବର୍ଷା । ପଚପଚ କାଦୁଅ । ଭାକୁନିଆ ଗନ୍ଧ । ତା' ଭିତରେ କାମ କରିବା କିଛି ସହଜ ବ୍ୟାପାର ନୁହେଁ ।

ସ୍କୁଲ କଲେଜରେ ପଢ଼ିଲେ କିମ୍ବା ସ୍ୱାସ୍ଥ୍ୟକୁ ହୃଷ୍ଟପୁଷ୍ଟ କରି ରଖିଲେ ଲଗାତର ଭାବେ କାମ କରିବାର ଅଭ୍ୟାସ ଯେ ବଢ଼ିଯିବ - ଏମିତି କିଛି କଥା ନାହିଁ । ଅସଲ ହେଲା ଅଭ୍ୟାସ । ଏଣୁ ପ୍ରାୟ ୩/୪ ଘଣ୍ଟା କାମକଲା ଉତ୍ତାରୁ ସ୍ୱେଚ୍ଛାସେବକମାନେ ଦମ୍ ମାରିବାକୁ ଲାଗନ୍ତି । ଗୋଟିଏ ପଟେ ଘୃଣା; ଅନ୍ୟ ପଟେ ବିରକ୍ତି, ମଝିରେ ସମାଜ ସେବା ।

ଆଠଘଣ୍ଟା ସିନା କାମ କରିବା ଠିକ୍ ହୋଇଥାଏ; ମାତ୍ର ଏକାବେଳକେ ଆଠଘଣ୍ଟା ଖଟିବାକୁ ସବୁରି ଯୁ' କୁଳାଉଛି କେତେକେ ? ମାତ୍ର ଆଚାର୍ଯ୍ୟ ମହାଶୟଙ୍କ ବୟସ ସେତେବେଳକୁ ଷାଠିଏ ଟପିଯାଇଥିଲେ ସୁଦ୍ଧା ରୀତିମତ ଆଠଘଣ୍ଟା ଖଟି ପାରୁଥିଲେ । ପଦଯାତ୍ରାରେ ଗଲାବେଳେ ସେଦିନର ଘଟଣା ଉଲ୍ଲେଖ କରିବାକୁ ଯାଇ ସେ ଆଜିକାଲିର ଯୁବକମାନଙ୍କୁ ଥଟ୍ଟା କରନ୍ତି । କାରଣ ସେଥର ତ ସମସ୍ତେ ତାଙ୍କୁ କହିଲେ ବସିବା ଲାଗି କିମ୍ବା କାର୍ଯ୍ୟର ତଦାରଖ କରିବା ପାଇଁ । ହେଲେ, ଆଚାର୍ଯ୍ୟ ମହାଶୟ ବସିଲେ ନାହିଁ । ଚୁପଚାପ୍ ଜଣେ କର୍ମୀଙ୍କୁ ସାଙ୍ଗରେ ନେଇ ମଇଳା କାଢ଼ି ଚାଲିଲେ । ମନେ କରନ୍ତୁ, କୋଦାଳରେ ମଇଳା କାଢୁଛନ୍ତି, ଲଗାତର ଭାବେ କାମ କଲେ ତ ଥକ୍କା ଆସିବା ସ୍ୱାଭାବିକ । ଏଣୁ ସେ କାମରୁ ବଳ ହଟିଗଲା ପରେ ସେ କିଛି ସମୟ ଝାଡୁଦେଲେ, ନଚେତ୍ ମଇଳା ଉଠାଇଲେ । ଏମିତି କାମ ସବୁବେଳେ ଚାଲିଲା । ପୁଣି ଗୋଟିଏ କାମରୁ ଯାଇ ଅନ୍ୟକାମ କରିବାଦ୍ୱାରା ପୂର୍ବ କାମରୁ ବିଶ୍ରାମ ମିଳିଗଲା ।

ମେହେନ୍ତର ଘରର ଝିଅ, ବୋହୂମାନେ ମଇଳା ଉଠାଇବା କାମରେ ଲାଗିଥାଆନ୍ତି । ଆଚାର୍ଯ୍ୟ ମହାଶୟ ପ୍ରମୁଖ ବି ଏଇ କାମ କରୁଥାଆନ୍ତି । ଏମାନଙ୍କର ବେଶ ପୋଷାକ ଟିକିଏ ଭିନ୍ନ ଧରଣର ଥାଏ । ଯେତେହେଲେ ସ୍କୁଲ କଲେଜର ପିଲା କିମ୍ବା ସମାଜସେବୀ ଧୋବଧାଉଳିଆ ଲୋକ ଏମାନେ ? ପୁରୀ ମ୍ୟୁନିସିପାଲିଟିର ମେହେନ୍ତରଙ୍କ ପରି ଚିରା ଲେଙ୍ଗୁଡ଼ା ପିନ୍ଧା ବେଶ ଏମାନଙ୍କର

ନ ଥାଏ । ତେଣୁ ଏଭଳି ଭଦ୍ର ବେଶରେ ବି ପଞ୍ଚାଏ ଲୋକ ମଇଳା ଉଠାଇବା କାମ କରିବା ଦେଖି ସେମାନେ ଭୁଟ୍‌ଭାଟ ହେଉଥାନ୍ତି – ''ଏମାନେ ହେଉଛନ୍ତି କଲିକତି ମେହେନ୍ତର । ତା' ନ ହେଲେ ଏତେ ଧୋବ ଧାଉଳିଆ ହୋଇଥାଆନ୍ତେ କେମିତି ? ପୁଣି ସବୁ ମେହେନ୍ତର ତ ଯାଇ ଯୁଦ୍ଧରେ । ଏଠି କାମ କରନ୍ତା କିଏ ?''

## (୩୬)

ସ୍ୱରାଜ ଆନ୍ଦୋଳନ ଫଳରେ ଲୋକଙ୍କ ଭିତରେ ଭଲମନ୍ଦ ବୁଝିବାର ବଳ ବଢୁଥାଏ । ବିଶେଷତଃ ନୂଆ ରକମର ଶିକ୍ଷାପାଇଁ ଦେଶବାସୀ ବେଶି ଲୋଡ଼ି ଆସୁଥାଆନ୍ତି । ପୁଣି ଗାନ୍ଧୀଜୀଙ୍କ ପରାମର୍ଶ ଅନୁସାରେ ଠା'କୁ ଠା ମୌଳିକ ବିଦ୍ୟାଳୟମାନ ଖୋଲାଯାଉ ଥାଏ । ନୂଆ ଧରଣର ଶିକ୍ଷାର ଯୋଜନା ଦେବାଲାଗି ଓଡ଼ିଶା ଭିତରେ ରାମଚନ୍ଦ୍ରପୁରଠାରେ 'ମୌଳିକ ଶିକ୍ଷା ପରିଷଦ' ବୋଲି ଗୋଟିଏ ଅନୁଷ୍ଠାନ ହୋଇଥାଏ । ଆଚାର୍ଯ୍ୟ ମହାଶୟ ତା'ର ସଭାପତି ଥାଆନ୍ତି ।

ନୂଆ ଶିକ୍ଷାର ପ୍ରସାର ସାଙ୍ଗକୁ ଦେଶର ଆନ୍ଦୋଳନ ପାଇଁ ଏହାର ଉପଯୋଗୀତା କେତେ ଥିଲା, ତାହା ତଳ ବିବରଣୀରୁ ଜଣାପଡ଼ିବ ।

'ଅଗଷ୍ଟ ୧୯୪୨ର କଂଗ୍ରେସ ଆନ୍ଦୋଳନ ଆରମ୍ଭରୁ ପରିଷଦର ସଭାପତି ଆଚାର୍ଯ୍ୟ ହରିହର, ସଂପାଦକ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ପାଣ୍ଠି ରକ୍ଷକ ରମାଦେବୀ ଓ ଅନ୍ୟ କେତେକ ସଦସ୍ୟ ସରକାରଙ୍କଦ୍ୱାରା କାରାରୁଦ୍ଧ ହେଲେ । ଚାରିଆଡ଼େ ସରକାରଙ୍କ ଦମନଲୀଳା ଚାଲିଲା । ଏ ପରିସ୍ଥିତିରେ ମୌଳିକ ରାଷ୍ଟ୍ରୀୟ ବିଦ୍ୟାଳୟଗୁଡ଼ିକ ଚଳାଇବା ଅସମ୍ଭବ ଓ ଅବାଞ୍ଛିତ ମନେକରି କର୍ମୀମାନେ ତା ୧୬/୮/୪୨ଠାରୁ ଅନିର୍ଦ୍ଦିଷ୍ଟ କାଳଲାଗି କାର୍ଯ୍ୟ ବନ୍ଦ କରିଦେଲେ । ମୋଟ ୨୭ଜଣ କର୍ମୀଙ୍କ ମଧ୍ୟରୁ ୧୭ଜଣ ମାସକ ମଧ୍ୟରେ ସରକାରଙ୍କ ଦ୍ୱାରା ରାଜନୈତିକ ଅପରାଧରେ କାରାରୁଦ୍ଧ ହେଲେ । ଦଶଜଣ ୨ ବା ୩ ବର୍ଷ ଅଟକବନ୍ଦୀ ବା ଦଣ୍ଡିତ ବନ୍ଦୀ ହେଲେ । ଜଣେ ଛାତ୍ର ଗୁଳିରେ ଆହତ ହୋଇଥିଲେ, ଜଣେ ୩ ମାସ କାରାଦଣ୍ଡ ପାଇଥିଲେ, ୫ ଜଣ ପୋଲିସ କର୍ତ୍ତୃକ ଗିରଫ ହୋଇ ପରେ ମୁକ୍ତି ପାଇଥିଲେ; ୫ଜଣ ପୋଲିସଦ୍ୱାରା ଭୟଙ୍କର ଭାବେ ମାଡ଼ ଖାଇଥିଲେ ଓ ଭର୍ତ୍ସିତ ହୋଇଥିଲେ ।.......

ପୋଲିସ ଏ ଅନୁଷ୍ଠାନଗୁଡ଼ିକ (ମୌଳିକ ବିଦ୍ୟାଳୟଗୁଡ଼ିକ) ପୋଡ଼ି ଧ୍ୱଂସ କରିଦେବାକୁ ଲୋକଙ୍କୁ ଭୟ ଦେଖାଇଲେ । ସେତେବେଳେ ଜିଲାବୋର୍ଡ଼ର ସରାକାରୀ କର୍ମକର୍ତ୍ତାମାନେ ପୁଣି ବୋର୍ଡ଼ ପ୍ରାଥମିକ ସ୍କୁଲ ଏ ଅଞ୍ଚଳରେ ଖୋଲିଦେବାର ଆଶା ଓ ପ୍ରଲୋଭନ ଦେଖାଇଥିଲେ, ମାତ୍ର ଲୋକେ ଏସବୁ ଭୟ ଓ ପ୍ରଲୋଭନରେ ଭୁଲି ନଥିଲେ । ଏଣେ ତିନିବର୍ଷକାଳ ଦେଶରେ ଅନ୍ନ, ବସ୍ତ୍ର ଓ ଜୀବନଧାରଣ ସାମଗ୍ରୀର ଘୋର ଅଭାବ । ବନ୍ୟା, ଅପମୃତ୍ୟୁରେ ଲୋକେ ଜର୍ଜରିତ ହୋଇଗଲେ । ଏ ଅଞ୍ଚଳରେ (ବରି ଅଞ୍ଚଳରେ) ସାଧାରଣ ଲୋକେ ଅଗଷ୍ଟ ଆନ୍ଦୋଳନରେ ଅସୀମ ଧୈର୍ଯ୍ୟ, ଚରମ ତ୍ୟାଗ ଦେଖାଇଲେ ଓ ନିର୍ମମ ଅତ୍ୟାଚାର ସହିଥିଲେ ।........

'ହରିଜନ ସେବକ ସଙ୍ଘ'ର ସଭାପତି ଓ ଓଡ଼ିଶାର ପ୍ରଧାନ ସେବକ ଠକ୍କରବାପା ବରି ଅଞ୍ଚଳକୁ ଆସି ଅବସ୍ଥା ଦେଖି କର୍ମୀମାନଙ୍କୁ ପରାମର୍ଶ ଦେଇଥିଲେ ଓ ସାହାଯ୍ୟ ଦେବାଲାଗି ତାଲିମ ସଙ୍ଘ (ଅଖିଳ ଭାରତୀୟ ସ୍ତରର ବେସରକାରୀ ଉଚ୍ଚ ମୌଳିକ ଶିକ୍ଷାନୁଷ୍ଠାନ)କୁ ସୁପାରିଶ କରିଥିଲେ ।'

ତା୧୯/୧/୪୬ ଦିନ ରାମଚନ୍ଦ୍ରପୁରଠାରେ ଉତ୍କଳ ମୌଳିକ ଶିକ୍ଷା ପରିଷଦର ବାର୍ଷିକ ସାଧାରଣ ଅଧିବେଶନରେ ଯେଉଁ ବିବରଣୀ ପାଠ କରାଯାଇଥିଲା ଉପରିସ୍ଥ ବିବରଣୀଟି ତା'ର କେତୋଟି ଧାଡ଼ି ।

ବର୍ଷକ ଭିତରେ ଦେଶରେ ପବନ ବଦଳି ଆସିଲା । ଲୋକଙ୍କ ଆଖିରେ ସ୍ୱାଧୀନତା ପାଇବାର ଅଶା ଫୁଟି ଉଠିଲା । ହେଲେ ଧର୍ମନାମରେ ପୁଣି କେତେକେ ସ୍ୱାଧୀନତା ଭିତରେ କେଁ ପୂରେଇବାକୁ ଲାଗିଲେ । କ୍ରମେ ହିନ୍ଦୁ ଓ ମୁସଲମାନ — ଏପରି ଦୁଇ ଭାଗରେ ଦେଶସାରା ଲୋକେ ବିଭକ୍ତ ହେବାକୁ ଲାଗିଲେ । ଯେଉଁ ଗାଁରେ ପୁରୁଷ ପୁରୁଷ ଧରି ଉଭୟ ଗୋଷ୍ଠୀ ଭାଇ ଭାଇ ପରି ଚଳି ଆସୁଥିଲେ, ସେଠାରେ କ୍ରମଶଃ ଭୟ ଦେଖାଦେଲା । ଭୟବଶତଃ କେଉଁଠି ନାନା ରକମର ହିଂସାକାଣ୍ଡମାନ ଘଟିଲା । ସ୍ୱାଧୀନତା ପାଇଁ ଯେଉଁମାନେ ହିନ୍ଦୁ ମୁସଲମାନର ଭେଦକୁ ଭୁଲି ଯାଇଥିଲେ, ଠିକ୍ ସ୍ୱାଧୀନତା ପାଇବାବେଳକୁ ସେମାନଙ୍କ ମନରେ ତାହା ଜାଗିଉଠିଲା । କ୍ୱାଇମ୍-ଇ-ଆଜାଦ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ନେତୃତ୍ୱରେ ବହୁ ଟାଣୁଆ ମୁସଲମାନ ପାକିସ୍ତାନର ଦାବୀ କଲେ । ବିଶିଷ୍ଟ ଉର୍ଦ୍ଦୁ କବି ଇକ୍‌ବଲ୍‌ଙ୍କ ସାହିତ୍ୟରେ ପାକିସ୍ତାନ ଶବ୍ଦର ଉଲ୍ଲେଖ ଥିଲା । ସ୍ୱତନ୍ତ୍ର ଏକ ରାଷ୍ଟ୍ର ଗଠନ କରି ତା'ର ଶାସନ ଡୋରି ହାତକୁ ନେବାପାଇଁ ଜିନ୍ନା ସାହେବ ପାକିସ୍ତାନ ଶବ୍ଦ ବ୍ୟବହାର କଲେ । ଅତୀତରେ ମୁସଲମାନମାନେ କିପରି ବୀର ଥିଲେ ଓ ଆଜି କିପରି ଖରାପ ଅବସ୍ଥାରେ ପଡ଼ି ରହିଛନ୍ତି, ସେମାନଙ୍କର କିପରି ଭାରତ ଭିତରେ ସମ୍ମାନ ନାହିଁ — ଏ ସବୁର ବ୍ୟାଖ୍ୟା ସେମାନେ କଲେ । ଫଳରେ ଜାତିଭାଇଙ୍କ ମନରେ ସେମାନେ ସଂକୀର୍ଣ୍ଣ ଜାତୀୟତାର ମଞ୍ଜି ବୁଣିଦେଲେ । ପୁଣି ମୁସଲମାନମାନେ 'ଲଢ଼କେ ଲେଁଗେ ପାକିସ୍ତାନ' ବୋଲି ପାଟି କଲାବେଳେ ଦଳେ ହିନ୍ଦୁ ବାହାରିଲେ ଖାଣ୍ଟି ହିନ୍ଦୁ ରାଜ୍ୟ ପ୍ରତିଷ୍ଠା କରିବାପାଇଁ । ନିଜ ଯୁକ୍ତିକୁ ପ୍ରତିପାଦନ କରିବାପାଇଁ ''ମୁସଲମାନମାନେ ଭାରତୀୟ ଦେବମନ୍ଦିର ଧ୍ୱଂସ କରିଛନ୍ତି, ହିନ୍ଦୁ ସ୍ତ୍ରୀ ପିଲାଙ୍କ ଉପରେ ଅତ୍ୟାଚାର କରିଛନ୍ତି, ମାମୁଦ ଓ ତୈମୁରଙ୍କ ସାହାଯ୍ୟରେ ଏ ଦେଶକୁ ଆକ୍ରମଣ କରି ଲୁଣ୍ଠନ କରିଛନ୍ତି'' ଇତିବୃତ୍ତି ଆଦି ଗାଇଲେ । ସିଧାସଳଖ ପ୍ରଚାର ମଧ୍ୟ କଲେ । ଭିତରେ ଭିତରେ ସଂଗଠନ ସେମାନଙ୍କର ଚାଲିଲା ।

ଫଳରେ କୋଇଲା ଖଣିରେ ଗଇଁତିଧରି ଦୁଇଭାଇ ମିଳିମିଶି କାମ କରୁଥିବା, ଝୋଟ କଳର ମୂଲିଆ ବସ୍ତିରେ କିମ୍ବା ଚାହା ବଗିଚାରେ ପୋକ, ଡାଆଁସ ମେଳରେ ଅନ୍ଧାରିଆ ଘରର ଅଣଓସାରିଆ ପିଣ୍ଡାରେ ଅଧାପେଟ ହୋଇ ପଡ଼ି ରହିଥିବା ଗରିବ ଲୋକ ବି ନିଜକୁ ହିନ୍ଦୁ ଆଉ ମୁସଲମାନ କରି ବାଣ୍ଟିନେଲେ । ବଡ଼ ଲୋକଙ୍କ କଥା ପଚାରେ କିଏ ? ପୂର୍ବରୁ ତ ପରସ୍ପର ଭିତରେ ସେମାନଙ୍କର

ବଳ କଷାକଷି ଚାଲିଥିଲା । ଅମୁକ ମିଆଁଙ୍କ ଜମିଟା କେମିତି ଅମୁକ ମିଶ୍ରଙ୍କ ବଗିଚାରେ ମିଶିବ, କିମ୍ବା ଅମୁକ ପଟ୍ଟନାୟକଙ୍କ ପୁଅ ଅମୁକ ଅଲ୍ଲିଙ୍କ ଜ୍ୱାଇଁଙ୍କଠାରୁ କିପରି ବଡ଼ ଚାକିରୀ କରିବେ- ଏଇଥିପାଇଁ ପ୍ରତିଯୋଗିତା ତ ପୂର୍ବରୁ ଚାଲିଥିଲା । ତାକୁ ଆହୁରି ଭୟଙ୍କର କଲା ରାଜନୈତିକ ସ୍ତରର ଏଇ ନୂତନ ଜାତି ଭେଦ । ମାତ୍ର ଆଚାର୍ଯ୍ୟ ମହାଶୟ ପ୍ରମୁଖ ଏଥିରେ ଭଳି ଗଲେ ନାହିଁ । ସେଇ ପୁରୁଣା ସୂତାକଟା କାମକୁ ଧରି ବସିଲେ ।

## (୩୭)

ଲୋକେ ନେତାଙ୍କ କଥାରେ ଭୁଲିଗଲେ । ସାମାନ୍ୟ ଉତ୍ତେଜନାରେ ଭଳିଗଲେ । 'କୋରାନ ସରିଫ'ର 'ରହିମ୍' ଏବଂ 'ତୁଳସୀ ରାମାୟଣ'ର 'ଦୟା' ଶବ୍ଦର ଅର୍ଥ ସେମାନଙ୍କ ମନରେ ରହିଲା ନାହିଁ । ତେଣେ ପୁଣି ଦେଶରେ ନେତାମାନେ ଶୀଘ୍ର ଇଂରେଜମାନଙ୍କୁ ନିକାଲିବା ଲାଗି ତରବର ହୋଇ ଉଠିଲେ । ଗାଁ ଗହଳର ସାଧାରଣ ଲୋକ ଆଉ ଜେଲରୁ ଫେରିଥିବା ଛୋଟବଡ଼ ନେତା ଅନେକେ ବିଚାର କରୁଥିଲେ — ଇଂରେଜ ଆମର ଶତ୍ରୁ ।

କିନ୍ତୁ ଗାନ୍ଧୀଜୀଙ୍କର ବିଚାର ଥିଲା ଭିନ୍ନେ । ସେ କହୁଥିଲେ- ''ଇଂରେଜମାନେ ଆମର ବନ୍ଧୁ । ବରଂ ଇଂରେଜମାନେ ରହନ୍ତୁ କିନ୍ତୁ ସାହେବୀ ଢଙ୍ଗ (ଇଂରେଜୀୟତ୍) ଏ ଦେଶରୁ ଯାଉ ।'' କାରଣ ସାହେବମାନଙ୍କୁ ତଡ଼ିବା ଲାଗି ଲଢୁଥିବା ବାପା ଆପଣା ପୁଅକୁ କେମ୍ବ୍ରିଜ ସ୍କୁଲକୁ ପଠାଇବାରେ ଆପତ୍ତି କରୁ ନଥିଲେ । ତା'ଛଡ଼ା ଇଂରେଜୀ ଟାଇ, ଆମେରିକାନ୍ ପ୍ୟାଣ୍ଟ ତ ପ୍ରତ୍ୟେକ ଯୁବକଙ୍କର ଆଦରର ସାମଗ୍ରୀ ଥିଲା । ଦୁଇପଦ ଇଂରେଜୀ କହି ଜାଣିଲେ କାମରୁ ମୁକ୍ତି ମିଳିବ । ଦିହକ ଭରି ଲଙ୍ଗଳକଣ୍ଟିରେ ହାତ ନ ଦେଇଥିଲେ ସୁଦ୍ଧା ପେଟ ଅପୋଷା ରହିବ ନାହିଁ । କାମରୁ ଛୁଟି, ଲୋକଙ୍କଠାରୁ ସମ୍ମାନ ଓ ଆବଶ୍ୟକୀୟ ପଇସା ଯେଉଁଥିରୁ ମିଳିବ- ସେ ବିଦ୍ୟା ଛାଡ଼ିବାକୁ ଲୋକେ ରାଜି ହୁଅନ୍ତେ କାହିଁକି ? ଫଳରେ ଆଚାର୍ଯ୍ୟ ମହାଶୟ ପ୍ରଭୃତିଙ୍କ ''କୁଟି ଖାଇବା, କାଟି ପିନ୍ଧିବା'' କଥା ଅନେକଙ୍କ ମନର ଦିନୁ ଦିନୁ ପୁରୁଣା ଦିନର କଥା ହୋଇ ଚାଲିଥାଏ । ବହୁ ବୁଦ୍ଧିମାନ୍ ଲୋକେ ସରକାରକୁ ଆସି ଏ ଦେଶରେ କଳ ଉପେର କଳ ବସାଇବାର ବିଚାର କରୁଥାଆନ୍ତି । ସାଧାରଣ ଲୋକେ ଭାବୁ ଥାଆନ୍ତି — 'ଦେଶ ସ୍ୱାଧୀନ ହେବ । ଆମେ ଗୋଟାଏ ସ୍ୱାଧୀନ ଜାତି ହେବୁ । ତା ସାଙ୍ଗକୁ ଆମ ପୁଅ ବିଭାଘର ହେବ କି ପିଲାଏ ପାଠ ପଢ଼ିବେ - ଘର ତିଆରି ହେବ, ଜମି କିଣା ଯିବ' ଇତ୍ୟାଦି । ନେତା ଭାବୁ ଥାଆନ୍ତି 'ଇଂରେଜ ଯିବେ । ଆମେ ତାଙ୍କୁ ତଡ଼ିବୁ । ଶାସନ ଡୋରୀ ଏ ଦେଶର ଲୋକଙ୍କ ହାତକୁ ଆସିବ । ଆମେ କ୍ଷମତାରେ ରହିବୁ । ସମସ୍ତେ ଆମକୁ ବାହା-ବା ଦେବେ । ଦେଶର ମଙ୍ଗଳ ହେବ ।' ଗାନ୍ଧୀଜୀ ଭାବୁଥାଆନ୍ତି- 'ଲୋକଙ୍କ ଆଖିରୁ ଲୁହ ଯିବ । ଦେଶରେ ରାମରାଜ୍ୟ ହେବ ।' କିନ୍ତୁ ବ୍ୟବସାୟୀଙ୍କର ଏଥିରେ ପରବାୟ ନଥାଏ । ଆପଣା ହାତରେ ଦି' ପଇସା ରଖିଥିଲେ- ସମସ୍ତେ ତ ତାଙ୍କ ପାଖକୁ ଆସିବେ । ଚିନ୍ତା କ'ଣ ! ହେଲେ ସରକାରୀ ଚାକିରୀଆମାନେ ଟିକେ ଶଙ୍କିକରି ଥାଆନ୍ତି । କାରଣ ସ୍ୱାଧୀନତାର ସିନ୍ଦୁରା ଫାଟି ଆସୁଥିବାରୁ ଆଗାମୀ ପ୍ରତି ଅନାଗତ ସେମାନଙ୍କ ମନରେ ଡରଥାଏ ।

ହିନ୍ଦୁ-ମୁସଲମାନ ଭେଦପରି ହରିଜନ ନାମକ ଆଉ ଏକ ନୂଆ ଭେଦ ଇଂରେଜ ସରକାର ଏଠି ପୂରାଇବାର ଚେଷ୍ଟା କରି ସାରିଥିଲେ । ମାତ୍ର ଗାନ୍ଧୀଜୀଙ୍କ ନୈତିକବଳ ଆଗରେ ତାହା ଉଧେଇ ପାରିଲାନାହିଁ । କିନ୍ତୁ ମହାତ୍ମାଙ୍କର ଶତଚେଷ୍ଟାସତ୍ତ୍ୱେ ହିନ୍ଦୁ ମୁସଲମାନ ଭେଦ ଏଠୁ ଗଲା ନାହିଁ । ଲୋକଙ୍କ ମନର ବିଷ ଗାଢ଼ ହେବାକୁ ଲାଗିଲା ଓ ସେମାନେ ଅଧିକ ଦଳାଦଳି ଭିତରେ ପଡ଼ିଲେ ।

ମୁସଲମାନମାନଙ୍କର ଭଲ ମନ୍ଦର ହେପାଜତ କରିବାପାଇଁ 'ମୁସ୍‌ଲିମ୍ ଲିଗ୍' କାମ କରୁଥାଏ । ଏଣେ ଜାତୀୟ କଂଗ୍ରେସ ଘୋଷଣା କରୁଥାଏ ନିଜକୁ ଅହିଂସାର ଠିକାଦାର ବୋଲି । ମାତ୍ର ପ୍ରଚ୍ଛନ୍ନ ଓ ପ୍ରକାଶ୍ୟ ବିରକ୍ତି ଅଶ୍ରଦ୍ଧା ଉଭୟ ସ୍ଥାନରେ କାର୍ଯ୍ୟ କରୁଥାଏ । କେଉଁଠି ବେଶି କେଉଁଠି ବା କମ୍ । ମାତ୍ର ଏ ସବୁର ସଠିକ୍ ଖବର ବିଚରା ଗରିବ ଲୋକଙ୍କ ପାଖକୁ ଆସିପାରୁ ନଥାଏ । ଉପରେ ଉପରେ ପ୍ରସ୍ତାବ, ସଭା, ଶୋଭାଯାତ୍ରା ଆଦି ଚାଲିଥାଏ ।

ଜାତୀୟ କଂଗ୍ରେସ ପାକିସ୍ତାନ ପ୍ରସ୍ତାବର ସପକ୍ଷରେ ନଥିଲେ । ମାତ୍ର ଏଣେ ସ୍ୱାଧୀନତା ଡେରି ହେଲେ ଇଂରେଜମାନେ ପୁଣି ଚାଲ ଖେଳିବେ- ଏଇ ଭୟରେ ଯେ କୌଣସିମତେ ତାହା ଆସିଯାଉ ବୋଲି ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସମିତି ବ୍ୟାକୁଳ ହେଉଥିଲେ । ମାତ୍ର ଗାନ୍ଧୀଜୀ ଭାବୁଥିଲେ ଅନ୍ୟକଥା । ତାଙ୍କ ଆଖିରେ ଜଳ ଜଳ ଦିଶୁଥିଲା — ଭାରତ, ପାକିସ୍ତାନ ହେଲେ, ହିନ୍ଦୁ ମୁସଲମାନ ଦଙ୍ଗାହଙ୍ଗାମା ସୃଷ୍ଟି ହେବ । ତେଣୁ ସେ କହୁଥିଲେ 'ପାକିସ୍ତାନ ହେବତ ମୋର କବର ଉପରେ ହେବ ।'

କିନ୍ତୁ ତାଙ୍କ କଥା ଶୁଣିଲା କିଏ ? ଭାରତୀୟ ଜାତୀୟ କଂଗ୍ରେସ ସ୍ୱାଧୀନତା ପାଇଁ ବ୍ୟାକୁଳ ହୋଇ 'ମୁସଲିମ୍ ଲିଗ୍'ର ପାକିସ୍ତାନ ପ୍ରସ୍ତାବକୁ ସମର୍ଥନ କଲା । ୧୯୪୬ର ନିର୍ବାଚନରେ କେତେକ ପ୍ରଦେଶରେ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲିଗ୍ ପୁଣି କ୍ଷମତାକୁ ଆସିଥିଲେ ।

କିନ୍ତୁ 'ମୁସଲିମ୍ ଲିଗ୍' ଯେଉଁ ସିଧାସଳଖ ବ୍ୟବସ୍ଥା (ଡାଇରେକ୍ଟ ଆକ୍‌ସନ୍) କଥା ଉଠାଇଲା, ତାହା ହିନ୍ଦୁମାନଙ୍କ ମନରେ ଆଘାତ ଦେଲା । ହିନ୍ଦୁ ନେତାମାନେ ତା'ର ନାନା ରକମର ଅର୍ଥ କଲେ । ଆଗରୁ ତ ଅବସ୍ଥା ଅନ୍ୟ ରକମର ଥିଲା । ଡାଇରେକ୍ଟ ଆକ୍‌ସନ୍ କଥା ଯେମିତି ସେମାନଙ୍କୁ ବୁଝେଇ ଦିଆଯାଇଛି, ଉଭୟେ ଦଳ ମାତି ଉଠିଲେ । ଫଳରେ କଲିକତା ସହରରେ ରକ୍ତଲୀଳା ଚାଲିଲା । ମଣିଷ ଯେ ମଣିଷ-ଏକଥା ସେ ପୂରାପୂରି ଭୁଲିଗଲା । ବ୍ୟଭିଚାର ଓ ଅତ୍ୟାଚାର ଭିତରେ ସମୁଦାୟ ସହର ଆତଙ୍କିତ ହୋଇ ଉଠିଲା । କେନ୍ଦ୍ର ସରକାରଙ୍କର ସୈନ୍ୟମାନେ ବି କିଛି କରିପାରିଲେ ନାହିଁ ।

ଏତିକିବେଳେ ଗାନ୍ଧୀଜୀ ସେଠାରେ ପହଞ୍ଚିଲେ । କେନ୍ଦ୍ର ସରକାରଙ୍କ ହଜାର ହଜାର ଫଉଜ ଯାହା କରିପାରୁ ନଥିଲେ, ଗାନ୍ଧୀଜୀଙ୍କର ପ୍ରାର୍ଥନା ତାହା କରିଦେଲା । ହାଣକଟା ଥମିଲା । ଲୋକଙ୍କୁ ମଣିଷ ମାରିବାପାଇଁ ଉତ୍ସାହ ଦେବା ବଦଳରେ ଅନେକେ ବାହାରିଲେ ମୃତ ସ୍ତ୍ରୀ-ପୁରୁଷ, ପିଲାଛୁଆ, ଭଙ୍ଗାରୁଜା ଘରବାଡ଼ିକୁ ହେପାଜତ କରିବାଲାଗି ।

ଠିକ୍ ଏଇ ସମୟରେ, ଯେତେବେଳେ ଗାନ୍ଧୀଜୀ ପୂର୍ବ ବଙ୍ଗର ବିଧ୍ୱଂସ୍ତ ନୂଆ ଖାଲି ଅଞ୍ଚଳରେ

ବୁଲୁଥାଆନ୍ତି ସୁସ୍ଥ ବାତାବରଣ ଫେରାଇ ଆଣିବାକୁ, ସେତେବେଳେ ଭାରତର ସ୍ୱାଧୀନତା ଘୋଷିତ ହେଲା । ୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ଶହ ଶହ ବର୍ଷର ଅଖଣ୍ଡ ଭାରତ ଦି'ଖଣ୍ଡ ହୋଇଗଲା । ଗୋଟିଏ ବଦଳରେ ଦୁନିଆ ଦେଖିଲା ଦୁଇଟି ଦେଶ — ଭାରତ ଓ ପାକିସ୍ତାନ । ମହାତ୍ମା ଗାନ୍ଧୀ, ମୌଲାନା ଆଜାଦ, ଖାଁ ଅବ୍ଦୁଲ ଗଫୁର ଖାଁ (ସୀମାନ୍ତ ଗାନ୍ଧୀ) ପ୍ରଭୃତିଙ୍କ ଅଖଣ୍ଡ ଭାରତର ଚେଷ୍ଟା ଶେଷରେ ବିଫଳ ହେଲା, ଫଳରେ ହଜାର ହଜାର ମଣିଷର ମଡ଼ା ଉପରେ ଗଢ଼ାଗଲା ପାକିସ୍ତାନ । ଭାରତ ବିଭକ୍ତ ହେଲା । କିନ୍ତୁ ହେଲା କ'ଣ ?

ଏଇ ପ୍ରଶ୍ନ ହିଁ ଗାନ୍ଧୀବାଲାମାନଙ୍କୁ ଅଥୟ କଲା । ସେ ଦିନଟି ଗାନ୍ଧୀଜୀଙ୍କର କଟିଲା ପ୍ରାର୍ଥନା, ମୌନ, ଉପବାସ ଏବଂ ସୂତାକଟା ଭିତରେ । ଆଚାର୍ଯ୍ୟ ମହାଶୟଙ୍କ ପରି ଯେଉଁମାନେ ଗାନ୍ଧୀଜୀଙ୍କ ବିଚାର ନିକଟରେ ନିଜକୁ ସମର୍ପଣ କରି ଦେଇଥିଲେ; ସେମାନେ ଆପଣା କାମରେ ଲାଗିଗଲେ । ବାହାର ଦୁନିଆର ଏ ସମସ୍ତ ହେର-ଫେର ସେମାନଙ୍କୁ ପ୍ରଭାବିତ କରି ପାରୁ ନ ଥିଲା ।

ସତ୍ୟ ଏବଂ ଅହିଂସାର ଚେର କିପରି ଲୋକଙ୍କ ମନ ଭିତରେ ମାଡ଼ିବ- ତା'ର ଉଦ୍ୟମ କରୁଥିଲେ ସେମାନେ । ଏଥିପାଇଁ ଗାନ୍ଧୀଜୀଙ୍କୁ ଭେଟୁଥିଲେ । ତାଙ୍କ ସଙ୍ଗେ ଚିଠି ପତ୍ରର ଆଦାନ ପ୍ରଦାନ କରୁଥିଲେ । ତାଙ୍କର ବିଚାରକୁ ଅଧିକରୁ ଅଧିକ ଅଧ୍ୟୟନ କରୁଥିଲେ । ପୁଣି କାମରେ ଲାଗୁଥିଲେ । କିନ୍ତୁ ମନରେ ପ୍ରଶ୍ନ ଉଠୁଥିଲା ଓଲଟା ଚାଲିଥିବା ଚକକୁ ଆଗକୁ ଗଡ଼ାଯିବ କେମିତି ?

## (୩୮)

୧୯୪୬ ମସିହାର କଥା । ଆଚାର୍ଯ୍ୟ ମହାଶୟ ଓ ରମାଦେବୀ ଗାନ୍ଧୀଜୀଙ୍କ ପାଖକୁ ଯାଇଥାଆନ୍ତି ଦେଖା କରିବା ଲାଗି । କେତେ ଲୋକତ ତାଙ୍କ ପାଖକୁ ଆସୁ ଥାଆନ୍ତି । ଏଣୁ ଦୁଇଦିନ କାଳ ଅପେକ୍ଷା କରି ରହିବାକୁ ପଡ଼ିଲା । ତୃତୀୟଦିନ ସାକ୍ଷାତ୍ ହୋଇ ପାରିବ ବୋଲି ସେକ୍ରେଟାରୀଙ୍କଠାରୁ ସୂଚନା ମିଳିଲା ।

ସେ ଦିନ ସକାଳେ ଗାନ୍ଧୀଜୀ ବୁଲା ବୁଲି ସାରି ଫେରୁ ଥାଆନ୍ତି । ହାତରେ ତାଙ୍କର ଏଣୁ ତେଣୁ ବାଉଁଶ ଖଣ୍ଡେଥାଏ । ପାଖରେ ଥିବା ଶ୍ରୀ ଶରତବାବୁଙ୍କୁ ଆଚାର୍ଯ୍ୟ ମହାଶୟ ଠାରି ଦେଲେ — ଗାନ୍ଧୀଜୀଙ୍କୁ ତାଙ୍କ ବାଡ଼ିଟି ଦେଇ ଦେବା ଲାଗି । ଶରତ ବାବୁ ଯେତେବେଳେ ଗାନ୍ଧୀଜୀଙ୍କ ହାତକୁ ବାଡ଼ିଟି ବଢ଼ାଇ ଦେବାକୁ ଗଲେ, ଗଦ୍‌ଗଦ୍ ହୋଇ ଗାନ୍ଧୀଜୀ କହିପକାଇଲେ, ''ଓ, ଓ ଲାଠି ନହିଁ ହୈ ।'' ଆଚାର୍ଯ୍ୟ ମହାଶୟ ବୁଝିଗଲେ । ମାତ୍ର ଏହାର ତାତ୍ପର୍ଯ୍ୟ କ'ଣ ?

୧୯୩୮ ମସିହା କଥା । ପୁରୀର ଡେଲାଙ୍ଗଠାରେ 'ଗାନ୍ଧୀ ସେବା ସଙ୍ଘ'ର ସମ୍ମିଳନୀ ବସିଥାଏ । ମୁଖ୍ୟ ମୁଖ୍ୟ କଂଗ୍ରେସ ଲୋକେ ଓ ଗାନ୍ଧୀଜୀଙ୍କ ଗଠନମୂଳକ କାମରେ ଲାଗି ରହିଥିବା କର୍ମୀମାନେ ସେଠାରେ ଏକତ୍ରିତ ହୋଇ ଥାଆନ୍ତି । ସମ୍ମିଳନୀ ସାତଦିନ ଧରି ଚାଲିଥାଏ ।

ଦିନେ ଗାନ୍ଧୀଜୀ ସକାଳୁ ବୁଲି ବାହାରିଲା ବେଳକୁ ପାଖରେ ପଡ଼ିଥିବା ବାଉଁଶ ଭିତରୁ ଗୋଟିଏ ଟାଣି ଆଣି ଧରିଲେ । ବାଉଁଶଟିର ଲମ୍ବ ବେଶି ନ ଥିଲେ ବି ବାଡ଼ି ହେଲା ଭଳି ଯୋଗ୍ୟତା ତା'ର ନଥିଲା । ସେଇଟିକୁ ଫୋପାଡ଼ି ଦେଇ ପୁଣି ଆଉ ଖଣ୍ଡେ ଧରିଲେ । ଯୋଗକୁ ସେଇଟି ଥିଲା ବତା ।

ଏଥର ଗାନ୍ଧୀଜୀ ଆଉ କିଛି ଧରିଲେ ନାହିଁ । ସିଧା ସଳଖ ଚାଲିଲେ ।

ଏ କଥା ଲକ୍ଷ୍ୟ କରିଥିଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ଗାନ୍ଧୀଜୀଙ୍କ ବାଡ଼ି କିଏ ନେଇ ଯାଇଛନ୍ତି ଓ ହାତରେ ଧରିବା ଲାଗି ଯେ ଖଣ୍ଡିଏ ବାଡ଼ି ସେ ଚାହାନ୍ତି, ଏ କଥା ଗୋପବାବୁ ବୁଝି ପାରିଲେ ।

ଗାନ୍ଧୀଜୀଙ୍କୁ ଦେବାକୁ ହେଲେ ତ ଭଲ ବାଡ଼ି ଖଣ୍ଡେ ଦେବା ଉଚିତ୍ । ସମ୍ମିଳନୀର କାମ ଭିତରେ ତୁରନ୍ତ ଭଲ ବାଡ଼ି ଖଣ୍ଡିଏ ଯୋଗାଡ଼ କରିବା ଟିକିଏ କଷ୍ଟକର । ପୁଣି ବର୍ତ୍ତମାନ ପାଇଁ ତାଙ୍କର ଦରକାର । ତା' ନହେଲେ ଗୋଟାଏ ଜାଗାରୁ ଦୁଇଟା ବାଉଁଶ ସେ ଟାଣି ଥାଆନ୍ତେ କାହିଁକି ? ତହୁଁ ସେ ଆଚାର୍ଯ୍ୟ ମହାଶୟଙ୍କ ବାଡ଼ିଟି ନେଇ ଗାନ୍ଧୀଜୀଙ୍କ କୋଠରୀରେ ରଖି ଦେଇ ଆସିଲେ ।

ସମ୍ମିଳନୀରେ ଆଚାର୍ଯ୍ୟ ମହାଶୟଙ୍କ କାମଥାଏ ଅତିଥିମାନଙ୍କର ବ୍ୟବସ୍ଥା କରିବା । ବିଭିନ୍ନ ପ୍ରଦେଶରୁ କେତେ କିସମର ଲୋକ ଆସୁ ଥାଆନ୍ତି । ଏଣୁ ସେମାନଙ୍କର ବ୍ୟବସ୍ଥା କରୁ କରୁ ବେଳ ଅଣ୍ଟେ ନା । ସମ୍ମିଳନୀର ତାତ୍ତ୍ୱିକ ଆଲୋଚନା ଶୁଣିବା ଲାଗି ସେ ଯାଇ ପାରନ୍ତି ନାହିଁ । କାମ ଟିକିଏ ତୁଟି ଆସିବାରୁ ସେ ଦିନ ସନ୍ଧ୍ୟାରେ ଆଚାର୍ଯ୍ୟ ମହାଶୟ ବୁଲି ବାହାରିଲେ । ବାଡ଼ି ଖୋଜା ପଡ଼ିଲା । ଗୋପବାବୁ ତାକୁ ନେଇ ଗାନ୍ଧୀଜୀଙ୍କ ଘରେ ରଖି ଦେଇ ଆସିଛନ୍ତି । ତାହା ଆଉ ମିଳୁଛି କେତେବେ ? ଦିନେ ଗଲା ଦୁଇଦିନ ଗଲା । ତୃତୀୟ ଦିନ ଆଚାର୍ଯ୍ୟ ମହାଶୟ ଦେଖିଲେ ଯେ, ବାଡ଼ିଟି ତାଙ୍କରି ରହିବା ଘର କାନ୍ଥରେ ଡେରା ହୋଇଛି । ଆଚାର୍ଯ୍ୟେ ଆଶ୍ଚର୍ଯ୍ୟ ହେଲେ । ଦୁଇଦିନର ହଜିଲା ବାଡ଼ି ପୁଣି ଘରକୁ ଫେରିଲା କେମିତି ବୋଲି ଗୋପବାବୁଙ୍କୁ ପଚାରିବାରୁ ତାଙ୍କଠାରୁ ସବୁକଥା ଜଣା ପଡ଼ିଲା ।

ତହୁଁ ଆଚାର୍ଯ୍ୟ ମହାଶୟ ପଚାରିଲେ, ''ବାଡ଼ିଟା ନେଇ ଆସିଲେ କାହିଁକି ?''

''ଆପଣଙ୍କର ଭାରି ଅସୁବିଧା ହେଉଛି, ଦେଖିଲି । ତେଣୁ ଆପଣ ଖୋଜୁଛନ୍ତି । ନେଇଆସି ନ ଥାଆନ୍ତି ତ କ'ଣ କରିଥାଆନ୍ତି ?'' ଗୋପବାବୁ କହିଲେ ।

ମାତ୍ର ଏକଥା ଆଚାର୍ଯ୍ୟ ମହାଶୟଙ୍କ ମନକୁ ପାଇଲା ନାହିଁ । ସେ ଚାହିଁଲେ ଯେ ଗୋପବାବୁ ବାଡ଼ିଟାକୁ ନେଇ ପୁଣି ଫେରାଇ ଆସନ୍ତୁ । କିନ୍ତୁ ଗୋପବାବୁ ଆଚାର୍ଯ୍ୟ ମହାଶୟଙ୍କ ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ଓଲଟି କହିଲେ, ''ହରି ଭାଇନା । ଆପଣ ଫେରାଇ ଦେଇ ଆସନ୍ତୁ ସିନା, ମୁଁ ଆଉ ନେବି ନାହିଁ ।''

ଗୋପବାବୁ ତ ଏକଜିଦିଆ ଲୋକ । ଥରେ ଯାହା କହିଲେ ଆଉ ତାକୁ ଫେରାଇ ନେବା ତାଙ୍କ ଦ୍ୱାରା ସମ୍ଭବ ନୁହେଁ । ତେଣୁ ଆଚାର୍ଯ୍ୟ ମହାଶୟ ନିଜେ ଯାଇ ବାଡ଼ିଟି ଗାନ୍ଧୀଜୀଙ୍କ ହାତରେ ଦେଇ ଆସିଲେ । ଆଗରୁ ଦୁଇଦିନ କାଳ ତାହା ଗାନ୍ଧୀଜୀଙ୍କଦ୍ୱାରା ବ୍ୟବହୃତ ହୋଇସାରିଥିଲା । ସୁତରାଂ, ତାକୁ ବଦଳାଇ ଆଉ ଗୋଟିଏ ବାଡ଼ି ଦେବା ଆଚାର୍ଯ୍ୟ ମହାଶୟଙ୍କ ମନକୁ ପାଇଲା ନାହିଁ ।

ବାଡ଼ିଟି ଦଶପଲ୍ଲାରୁ ଆସିଥିଲା । ଚଞ୍ଚାଚଞ୍ଚ କରି ବେଶ ସୁନ୍ଦର କରିଥାଆନ୍ତି ସେ ସେଇଟିକୁ । କେଉଁ କାଠରେ ତିଆରି ବାଡ଼ିଟା- ଠିକ୍ ମନେ ନାହିଁ । ତେବେ କଣ୍ଟି-ବାଉଁଶ ହେବ ବୋଧହୁଏ । ସେଇଦିନଠାରୁ ଏ ପର୍ଯ୍ୟନ୍ତ ଆଠବର୍ଷ କାଳ ତାହା ଗାନ୍ଧୀଜୀଙ୍କ ହାତରେ ରହି ଆସିଥିଲା ।

ଯେଉଁଠାରେ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ଭେଟ ହୁଏ, ଗାନ୍ଧୀଜୀ କହିପକାନ୍ତି – ''ଆଚାର୍‌ୟଜୀ, ଲାଠି ହୈ ।'' ମାତ୍ର ଏଥର ସେ ବାଡ଼ିଟି ହଜି ଯାଇଥାଏ । ୧୯୩୮ର ପରିସ୍ଥିତି ବି ଦେଶରେ ବଦଳି ଯାଇଥାଏ । ପୂର୍ବାପେକ୍ଷା ଗାନ୍ଧୀଜୀ ମଉଳି ପଡ଼ିଥାଆନ୍ତି ବେଶି । ତେଣୁ ଶରତ ବାବୁଙ୍କ ବାଡ଼ି ଦେବାକୁ ଲକ୍ଷ୍ୟକରି ସେ କହିଲେ, ''ଓ, ଓ ଲାଠି ନହିଁ ହୈ ।''

## (୩୯)

ଦେଶ ସ୍ୱାଧୀନ ହେଲା ସତ, କିନ୍ତୁ ନାନାରକମର ସମସ୍ୟା ଏଠାରେ ଲାଗି ରହିଲା । 'ଲଢ଼କେ ଲେଁଗେ ପାକିସ୍ତାନ'– ଏଇ ଧ୍ୱନି କରାଚୀରୁ ଢାକା ପର୍ଯ୍ୟନ୍ତ ଲୁହ ଏବଂ ଲହୁର ସୁଅ ଛୁଟାଇଲା । କଲିକତା, ଦିଲ୍ଲୀ, ଲାହୋର ଭଳି ସହରରେ ନାନାପ୍ରକାର ଅତ୍ୟାଚାର ଚାଲିଲା । ବହୁତ ଲୋକ ମଲେ । କେତେ ଘରଭାଙ୍ଗିଲା । କେତେ ଛୁଆ ଅନାଥ ହେଲେ । ବିଧବା ମା' ଭଉଣୀଙ୍କ କନ୍ଦାକଟାରେ ସାରା ଦେଶ ବିକଳ ହୋଇ ଉଠିଲା । ଗଣ୍ଡଗୋଳ ଲାଗିଥିବା ଅଞ୍ଚଳରୁ, ଯେ ଯୁଆଡ଼େ ପାରିଲେ, ଜୀବନ ବିକଳରେ ପଳାଇଲେ ।

ଯେଉଁମାନେ ଅନ୍ୟତ୍ର ପଳାଇଲେ ସେମାନଙ୍କୁ ରଖାଇବା ଓ ଯେଉଁମାନେ ମାଟିକାମୁଡ଼ି ପଡ଼ିରହିଲେ, ସେମାନଙ୍କ ନିରାପତ୍ତାର ବ୍ୟବସ୍ଥା କରିବା ହେଲା ଅସଲ ସମସ୍ୟା । ଗାନ୍ଧୀଜୀ ବଙ୍ଗଳା, ବିହାର, ଦିଲ୍ଲୀ ପ୍ରଭୃତି ସ୍ଥାନମାନଙ୍କରେ ଲୋକଙ୍କ ଭିତରେ ଭାଇଚାରାର ମନୋଭାବ ସୃଷ୍ଟି କରି ଚାଲିଲେ ।

ସେଦିନ ୧୯୪୮ ମସିହାର ଜାନୁୟାରୀ ୩୦ ତାରିଖ । ରେଡ଼ିଓ ଘୋଷଣା କଲା, ''ଗାନ୍ଧୀଜୀ ଆଉ ନାହାନ୍ତି ।''

ଗାନ୍ଧୀଜୀଙ୍କ ସାନ୍ନିଧ୍ୟରେ ସେତେବେଳକୁ ୱାର୍ଦ୍ଧାଠାରେ ଏକ ସମ୍ମିଳନୀ ହେବାକୁ ଯାଉଥାଏ । ଯେଉଁମାନେ ଛକାପଞ୍ଝା ରାଜନୀତି ଭିତରକୁ ନଯାଇ ଦେଶର ଶାସନ କଳରେ ଭାଗନେବାକୁ ନଚାହିଁ ଲୋକଙ୍କର ସେବା କରିବାକୁ ଲାଗିଥିଲେ, ସେମାନେ ସେଠାରେ ଏକତ୍ରିତ ହୋଇଥାଆନ୍ତି । ସମ୍ମିଳନୀ କାର୍ଯ୍ୟରେ ସହଯୋଗ କରିବା ଲାଗି ଓଡ଼ିଶାରୁ ବ୍ୟାସଜୀ (ଶ୍ରୀ ଈଶ୍ୱରଲାଲ ବ୍ୟାସ) ଯାଇଥାଆନ୍ତି ୱାର୍ଦ୍ଧା । ଗୋପବାବୁ ଏବଂ ଆଚାର୍ଯ୍ୟ ମହାଶୟ ସମ୍ମିଳନୀକୁ ଯିବା ପ୍ରସ୍ତୁତିରେ ଥାଆନ୍ତି । କିନ୍ତୁ ଆଉ ୱାର୍ଦ୍ଧା ଯିବାକୁ ହେଲା ନାହିଁ । ଜାତିର ପିତା ମହାତ୍ମାଗାନ୍ଧୀଙ୍କ ବିୟୋଗରେ ସେହି ବର୍ଷ ଫେବୃୟାରୀ ୪ରେ ହେବାକୁ ଥିବା ଏହି ସମ୍ମିଳନୀ ବନ୍ଦ ରହିଲା ।

''ଗୁରୁ ମଲା, ଶିଷ୍ୟ କାନ୍ଦିଲା
ଦୁହିଁଙ୍କ ଶ୍ରମ ବ୍ୟର୍ଥଗଲା''

ଏଣୁ ଗାନ୍ଧୀଜୀଙ୍କ ଚାଲିଯିବା ପରେ କାନ୍ଦିବାର ବେଳ ଆଉ ରହିଲା ନାହିଁ । ଭାରତର ବତିଶ କୋଟି ଲୋକଙ୍କ ଭିତରେ ଯେଉଁ ଅନ୍ୟାୟ ଇଚ୍ଛା କୁହୁଳି କୁହୁଳି ରହିଥିଲା, ସେହି ଦୁଷ୍ଟ ଇଚ୍ଛାହିଁ ଗାନ୍ଧୀଜୀଙ୍କୁ ହତ୍ୟା କଲା । ଏଇଆ ଧରିନେଇ ଆଚାର୍ଯ୍ୟ ମହାଶୟ ପୁଣି ଆପଣା କାର୍ଯ୍ୟରେ ଲାଗିଲେ । ଗାଁ ଗାଁ ବୁଲି ସୂତା କାଟିଲେ । ସୂତା କଟାଇଲେ । ପ୍ରାର୍ଥନା, ପାଇଖାନା ସଫା, ସବୁକିଛି

ଚାଲିଲା । ମାତ୍ର ସବୁକାମ ଭିତରେ ଗୋଟାଏ କେମିତି ନୀରସ ଭାବ ରହିଯାଉଥିଲା । ମନେ ହେଉଥିଲା-ଲୋକେ ଅଧିକରୁ ଅଧିକ ହୋଇ ଗାନ୍ଧୀଜୀଙ୍କଠାରୁ ଦୂରେଇ ଯାଉଛନ୍ତି । ଗାନ୍ଧୀଜୀଙ୍କ ବିଚାରକୁ ଭୁଲି ଯାଉଛନ୍ତି । ଯାହା ଚାଲିବାର କଥା ସେସବୁ ଚାଲୁନି । ଅସଲକଥା-ମାନବିକତାର ବିକାଶ ଉପରେ କେହି ଜୋର ଦେଉନାହିଁ । ଦେଶରେ ଏଇ ଚିନ୍ତା ବିଭ୍ରାଟ ଆଚାର୍ଯ୍ୟ ମହାଶୟଙ୍କୁ ବଡ଼ ବ୍ୟଥିତ କଲା । ନୀରବ ରହିଲେ ସୁଦ୍ଧା ଏ ସମ୍ପର୍କରେ ସେ ଭାବି ଚାଲିଲେ । ୧୯୪୮ ମସିହାରେ ଭାରତର ସବୁ ଦେଶୀୟ ରାଜ୍ୟ ବିଶାଳ ଭାରତ ସଙ୍ଗେ ମିଶିଗଲା । ସେହିବର୍ଷ, ଗାନ୍ଧୀଜୀଙ୍କ ମୃତ୍ୟୁପରେ ତାଙ୍କର ଯେତେ ଗଠନ ମୂଳକ ଚିନ୍ତାଧାରା ଥିଲା ସେ ସବୁକୁ କାମରେ ଲଗାଇଲାବାଲାମାନଙ୍କର ଏକ ସମାଜ ବା ଗୋଷ୍ଠୀ ସ୍ଥାପିତ ହେଲା । ତା ନାଁ ହେଲା ସର୍ବୋଦୟ ସମାଜ । ପ୍ରତିବର୍ଷ ଏହି ସମାଜର ଗୋଟିଏ ବାର୍ଷିକ ବୈଠକ ହୋଇ ଚାଲିଲା । ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ହେଲା ଓଡ଼ିଶାର ଅନୁଗୁଳଠାରେ । ଆଚାର୍ଯ୍ୟ ମହାଶୟ, ଗୋପବାବୁ, ଗୁଣନିଧି ବାବୁ, ହୋତା ମହାଶୟ, ବ୍ୟାସଜୀ ପ୍ରମୁଖଙ୍କ ବିଶ୍ରାମହୀନ ଚେଷ୍ଟା ଫଳରେ ସମ୍ମିଳନୀଟି ସର୍ବାଙ୍ଗ ସୁନ୍ଦର ହୋଇପାରିଲା । ବିଶିଷ୍ଟ ଶିକ୍ଷାବିତ୍ ଓ ଗାନ୍ଧୀପନ୍ଥୀ କାକା କାଲେଲ୍‌କର ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ।

ସେତେବେଳକୁ ପୁରୁଣା କର୍ମୀମାନଙ୍କ ଭିତରୁ ଅନେକେ ନିଜ ନିଜ ପେଟ ପାଟଣା ଘେନି ବସି ଯାଇଥାଆନ୍ତି । କେହି କେହି ସରକାରୀ ଚାକିରୀରେ ତ ଆଉ କେହି ବେପାର ବଣିଜରେ ମାତି ଥା'ନ୍ତି । ମାତ୍ର ସାଧାରଣ ଲୋକଙ୍କ ଭିତରେ ଆତ୍ମ ପ୍ରତ୍ୟୟର ଭାବନା ସୃଷ୍ଟି କରିବା ଓ ସେମାନଙ୍କୁ କୁଟି ଖାଇବା ଓ କାଟି ପିନ୍ଧିବାର ବାଟ ଦେଖାଇବାର ଆବଶ୍ୟକତା ଥାଏ । ଯେଉଁମାନେ ସ୍ୱରାଜ୍ୟ ଆନ୍ଦୋଳନରେ ଭାଗ ନେଇଥିଲେ ଓ ହାତକଟା ସୂତାର ଲୁଗା ପିନ୍ଧୁଥିଲେ ସେଭଳି କର୍ମୀମାନଙ୍କୁ ପୁଣିଥରେ ଏକାଠି କରିବାର ଯୋଜନା ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଚାଲିଥିଲା ।

ମାତ୍ର ପୁରୁଣା କର୍ମୀଙ୍କୁ ଉଦ୍‌ବୁଦ୍ଧ କରିବା କାମଟି କରିବ କିଏ ? ଏ ଦାୟିତ୍ୱ ଥିଲା ଆଚାର୍ଯ୍ୟ ମହାଶୟଙ୍କର । ସେ ବିଭିନ୍ନ ଅଞ୍ଚଳରେ ଥିବା କର୍ମୀମାନଙ୍କ ଘରକୁ ଯାଇଥିଲେ । ସେମାନଙ୍କର ଭଲ ମନ୍ଦ ଖବର ବୁଝୁଥିଲେ । ତାଙ୍କରି ଉପସ୍ଥିତିଟାହିଁ ଅନେକଙ୍କୁ ଉଦ୍‌ବୁଦ୍ଧ କରୁଥିଲା ପୁଣିଥରେ କାମରେ ଲାଗିବାପାଇଁ । ଜାଗାକୁ ଜାଗା ହୋଇଥିବା ଖଦୀ ପିନ୍ଧାଳି କର୍ମୀଙ୍କ ସମାବେଶରେ ସେମାନେ ଆସି ଯୁଟୁଥିଲେ । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହୋଇ ମଧ ଏ କର୍ମୀ ସମ୍ମିଳନୀରେ ଆସି ପହଞ୍ଚୁଥିଲେ ।

## (୪୦)

ଭାରତର ଦେଶୀୟ ରାଜ୍ୟ ବା ଗଡ଼ଜାତମାନଙ୍କ ଭିତରେ ହାଇଦ୍ରାବାଦ ଥିଲା ଖୁବ୍ ବଡ଼ । ରାଜା ଏବଂ ଜମିଦାରମାନେ ଚାଲିଯିବା ପରେ, ସେଠାରେ ବିଚରା ଗରିବ ଲୋକଙ୍କ ମନରେ ଆଶ୍ୱାସନା ଆସିଲା ଯେ ଏଥର ଆମକୁ ଜମି ମିଳିବ । କିନ୍ତୁ ଜମି ସେମାନଙ୍କୁ ମିଳିଲା ନାହିଁ ।

ଭାରତ ସାରା ରାଜା ଗଲେ । ଜମିଦାର ଗଲେ । କିନ୍ତୁ ଲୋକେ ଯେଉଁ ଗରିବକୁ ସେହି ଗରିବ ରହିଲେ । ଖାଇବା, ପିନ୍ଧିବା ପାଇଁ ତ ଜମି ଦରକାର । ଏଣୁ ସେଠାକାର ଗରିବ ଲୋକେ ବଡ଼ ବଡ଼ ଜମିବାଲାଙ୍କ ଉପରେ ଜୁଲମ କଲେ, ସେଠାରେ ଭାରି ଗଣ୍ଡଗୋଳ ହେଲା ।

ବିନୋବା ବୋଲି ଗାନ୍ଧୀଜୀଙ୍କର ଜଣେ ଚେଲା ସେ ଅଞ୍ଚଳରେ ଯାଇ ଲୋକମାନଙ୍କୁ ବୁଝାସୁଝା କଲେ ଏବଂ ତାଙ୍କରି କଥାରେ ନିଜ ଇଚ୍ଛାରେ ଜଣେ ଭଦ୍ରଲୋକ ତାଙ୍କ ଗାଁରୁ କଳିକଳିଆ ତୁଟେଇବା ପାଇଁ ଗରିବମାନଙ୍କୁ ଶହେ ଏକର ଜମି ଦେଇଦେଲେ । ସେଇଠୁ ଆରମ୍ଭ ହେଲା 'ଭୂଦାନ' । ଏକଥା ଖାଲି ହାଇଦ୍ରାବାଦ ଭିତରେ ସୀମାବଦ୍ଧ ହୋଇ ରହିଲା ନାହିଁ । ଦେଶର ଏ ମୁଣ୍ଡରୁ ସେମୁଣ୍ଡଯାଏ ବ୍ୟାପିଗଲା ।

ମହାତ୍ମା ଗାନ୍ଧୀଙ୍କର ମୃତ୍ୟୁ ହେବାର ତିନିବର୍ଷ ବିତିଯାଇଥାଏ । ଏ ପର୍ଯ୍ୟନ୍ତ ଆଚାର୍ଯ୍ୟ ହରିହରଙ୍କର ନାମ ଥିଲା ଗାନ୍ଧୀ-କାମ କରୁଥିବା କର୍ମୀମାନଙ୍କ ଭିତରେ ସମ୍ପର୍କ ବଢ଼େଇବା ଓ ଉତ୍ସାହ ସୃଷ୍ଟି କରିବା । ଏଣୁ ଓଡ଼ିଶାରେ ସେ ସବୁ କର୍ମୀଙ୍କ ଘରକୁ ଯାଉଥିଲେ । କା'ର କ'ଣ ଭଲମନ୍ଦ, ସୁବିଧା ଅସୁବିଧା ଅଛି, ପଚାରୁଥିଲେ । ଅପଣାର ପୁଅ ପୁତୁରା ପରି, ସେମାନଙ୍କ ସମସ୍ୟା ସବୁର ସମାଧାନ ଲାଗି ଚେଷ୍ଟା କରୁଥିଲେ । ତାଙ୍କ ପାଖରେ ଧନ ନ ଥିଲା କି କାହାରିକୁ କିଛି ଗୋଟାଏ ପଦବୀ ଦେବା ଭଳି ଶକ୍ତି ନଥିଲା । କେବଳ ଅଫୁରନ୍ତ ଶ୍ରଦ୍ଧାର ଥାଳ ଧରି ସେ ସେମାନଙ୍କ ଘରେ ପହଞ୍ଚି ଯାଉଥିଲେ ।

କିନ୍ତୁ ପରିସ୍ଥିତିଟା ଗୋଟେ ରକମର ଓଲଟା ଢଙ୍ଗରେ ଚାଲୁଥିଲା । ଗାନ୍ଧୀଜୀ କହୁଥିଲେ , ବିଲାତୀ ସ୍କୁଲ ଉଠାଇବାକୁ ହେବ । ମାତ୍ର ଯେମିତି ସ୍ୱାଧୀନ ସରକାର ଆସିଲା, ପ୍ରତ୍ୟେକ ଗାଁରେ ଖୋଲା ହୋଇ ଚାଲିଲା ନୂଆ ନୂଆ ବିଲାତୀ ଢଙ୍ଗର ସ୍କୁଲ । କାଦୁଅରେ ପଶି ମାଟି ଚକଟିବାକୁ ପିଲାଙ୍କର ଆଉ ଆଗ୍ରହ ରହିଲା ନାହିଁ । ସାଧାରଣ ଲୋକେ, ନିଜ ନିଜ ପଡ଼ୋଶୀ ଗାଁ ଲୋକ, ଭାଇ ବିରାଦଙ୍କୁ ଠକିବାରେ ଆନନ୍ଦ ପାଇଲେ । ଯେଉଁମାନେ ଦେଶର ସମସ୍ୟା ନେଇ ଲଢ଼ି ଚାଲିଥିଲେ, ସେମାନଙ୍କ ଭିତରୁ ଅନେକେ ଖାଲି ପଇସା ପାଇବାପାଇଁ ବ୍ୟାକୁଳ ହୋଇ ଉଠିଲେ । ମନେହେଲା- ସତେ ଗାନ୍ଧୀଙ୍କ ନାମ ଏ ଦେଶର ଲୋକେ ଭୁଲିଯିବେ ଅବା ! ଆଚାର୍ଯ୍ୟ ମହାଶୟଙ୍କୁ ଏହା ବଡ଼ ବ୍ୟଥିତ କଲା । କହନ୍ତେ ବା କାହାକୁ ? ସାଙ୍ଗସାଥୀ ଅନେକେ ତାଙ୍କ ବାଟରେ ନଥାନ୍ତି । କିନ୍ତୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀ ଈଶ୍ୱରଲାଲ ବ୍ୟାସ, ଶ୍ରୀ ଗୁଣନିଧି ମହାନ୍ତିଙ୍କ ଭଳି ସହକର୍ମୀ ଆଚାର୍ଯ୍ୟ ମହାଶୟଙ୍କ ସହିତ ଥିଲେ । ଅନ୍ଧାରରେ ବାଡ଼ି ବୁଲାଇଲା ପରି ସମସ୍ତେ ସୂତା କାଟୁଥିଲେ । ପ୍ରାର୍ଥନା କରୁଥିଲେ । ମାତ୍ର ସବୁରି ମନରେ ଥିଲା- ଆଗକୁ କ'ଣ କରିବାକୁ ହେବ । ଏତିକିବେଳେ ଭୂଦାନର ବିଚାର ଆସିଲା । ଲୋକେ ଜମିଦେବେ-ଗରିବ ଲୋକେ ତାକୁ ପାଇବେ । ପୁଣି ତାହାରି ଦ୍ୱାରା ସାରା ଭାରତରୁ ଗରିବ ପଣିଆ ଚାଲିଯିବ- ଏକଥା ଏ ଦେଶର ବହୁ ବୁଦ୍ଧିମାନ ଲୋକଙ୍କ ମନକୁ ପାଇଲା ନାହିଁ । ମାତ୍ର ଗୋପବାବୁ ଓ ଆଚାର୍ଯ୍ୟ ମହାଶୟଙ୍କ ଭଳି କେବଳ ଗାନ୍ଧୀବାଲା ଏଥିରେ ଆଶାୟିତ ହୋଇ ଉଠିଲେ । ଆଚାର୍ଯ୍ୟ ବିନୋବା ଚାଲି ଚାଲି

ଦେଶର ବିଭିନ୍ନ ଅଞ୍ଚଳରେ ଭୂଦାନ କଥା କହି ଚାଲିଥାଆନ୍ତି । ଏଣୁ ଏ ସମ୍ପର୍କରେ ମସୁଧା କରିବା ଲାଗି ନିଜେ ଗୋପବାବୁ ଗଲେ ବିନୋବାଜୀଙ୍କ ପଦଯାତ୍ରାକୁ; ତା'ପରେ ଓଡ଼ିଶାରେ 'ଭୂଦାନ'ର ପ୍ରଚାର ହେଲା । ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ସାଙ୍ଗରେ ଆଚାର୍ଯ୍ୟ ମହାଶୟ ମଧ୍ୟ ପଦଯାତ୍ରାରେ ଚାଲିଲେ ।

ଲୋକଙ୍କ ଭିତରେ ନିଃସ୍ୱାର୍ଥ ସେବା କରିବା ପାଇଁ ଅନେକ ଗାନ୍ଧୀବାଦୀ କର୍ମୀ ରହିଯାଇଥିଲେ । ଭୂଦାନ କାମରେ ସେମାନେ ବି ବାହାରିଲେ । ଯେମିତି ୧୯୨୧ରେ ଅସହଯୋଗ କରିବାକୁ, ୧୯୩୦ରେ ଲୁଣମାରିବାକୁ କିମ୍ବା ୧୯୪୨ରେ ଗାନ୍ଧୀଜୀଙ୍କ 'କର ବା ମର' କଥାକୁ କାମରେ ଲଗାଇବାକୁ ପିଲାଠୁଁ ବୁଢ଼ାଯାଏ ବାହାରି ପଡ଼ିଥିଲେ-ଏ କାମରେ ବି ସେଇମିତି ବାହାରିଲେ । ପୁଣି ଭୂଦାନ କ'ଣ- ଏହିକଥା ବୁଝାଇବା ପାଇଁ ରମାଦେବୀ ଏବଂ ଗୋପବାବୁ ବିନୋବାଜୀଙ୍କ ପରି ଓଡ଼ିଶା ସାରା ପାଦରେ ଚାଲି ଚାଲି ବୁଲିଲେ । ଆଉ ଆଚାର୍ଯ୍ୟ ମହାଶୟ କ'ଣ ବସି ପାରନ୍ତେ ? ସେ ମଧ୍ୟ ଚାଲିଲେ । ରାମଚନ୍ଦ୍ରଙ୍କ ମାଙ୍କଡ଼ପଲ ପରି ତାଙ୍କ ପଛରେ ଚାଲିଲେ ଆହୁରି ଅନେକ ।

## (୪୧)

ଭୂଦାନ କାମ ଆଗେଇଲା । ଗାଁକୁ ଗାଁ ଲୋକେ ଦେଲେ ଜମି । ପୁରୁଷ ପୁରୁଷ ଧରି ଦରପେଟା ରହି ଆସିଥିବା ହରିଜନ, ଆଦିବାସୀ, କୁଲି-ମୁଲିଆର ବାଡ଼ିରେ ବସିଲା କଳେଇ ଗଦା । ସାହୁକାର କିମ୍ବା ଖାମିଦ ଘରର ହାତଟେକା ବାସିତୋରାଣି ବଦଳରେ ସେ ପାଇଲା ଘରଣୀର ହାତ ପରଷା ଅନ୍ନ । ପୌଷ ମାସରେ ଲକ୍ଷ୍ମୀଙ୍କର ସ୍ୱାଗତ କଲା ଆପଣା ହାତରେ ଅର୍ଜିଥିବା ଧାନକେଣ୍ଡାରେ । ଗାଁକୁ ଗାଁ, ଘରକୁ ଘର, ଯେତେବେଳେ ଆଚାର୍ଯ୍ୟ ହରିହର ଏଇ ଦୃଶ୍ୟ ଦେଖିଲେ, ବୁଢ଼ା ବୟସରେ ବି ତାଙ୍କର ଯୁବକ ଭଳି ଉତ୍ସାହ ସୃଷ୍ଟି ହେଲା । ଗାନ୍ଧୀଜୀଙ୍କର 'ରାମରାଜ୍ୟ'ର ପରିକଳ୍ପନା ଯେ ଏହାରି ଯୋଗୁଁ ସଫଳ ହୋଇପାରିବ — ଏଇକଥା ସେ ବୁଲି ବୁଲି କହିଲେ ।

ଆଚାର୍ଯ୍ୟ ମହାଶୟଙ୍କର ଏକ ଅଭ୍ୟାସ ଯେ ସେ କଦାପି ଆଗକୁ ବାହାରିପଡ଼ି ନେତୃତ୍ୱ ନେବେ ନାହିଁ । ତାଙ୍କରି ଭାଷାରେ ସେ, '' ଜଣେ କର୍ମୀ, ପଛରେ ଚାଲିବା ଲୋକ ।'' ପଣ୍ଡିତ ଗୋପବନ୍ଧୁ ବଞ୍ଚିଥିବାବେଳେ ସେ ତାଙ୍କ ପଛରେ ଚାଲୁଥିଲେ । ପୁଣି ସ୍ୱରାଜ ଆନ୍ଦୋଳନରେ ଗୋପବନ୍ଧୁ ଚୌଧୁରୀ ଆସିଗଲେତ ତାଙ୍କ ପଛରେ ଚାଲିଲେ । ଏଥର ଯେଉଁ ଭୂଦାନ କାମ ଆସିଲା, ସେଥିରେ ମଧ୍ୟ ସେ ସେନାପତିତ୍ୱ ଦାୟିତ୍ୱ ମୁଣ୍ଡାଇଲେ ନାହିଁ । ଛୋଟ କର୍ମୀଟିଏ ପରି ବୁଲି ଲାଗିଲେ ।

ତେଣେ ଭାରତସାରା ବିନୋବାଜୀ ପାଦରେ ଚାଲୁଥାଆନ୍ତି । ଭୂଦାନର କଥା କହି ଲୋକଙ୍କୁ ସ୍ୱରାଜ୍ୟର ବାଣୀ ଶୁଣାଉଥାଆନ୍ତି ।

ଉତ୍ତର ପ୍ରଦେଶର ଗୋଟିଏ ଗାଁରେ ଲୋକେ କହିଲେ, 'ଗରିବ ଲୋକଙ୍କୁ ଟିକିଏ ଟିକିଏ ଜମି ଦେବୁ କ'ଣ ! ଆମ ଗାଁରେ ଭୂମି ମାଲିକ କେହି ରହିବେ ନାହିଁ । ଜମିଯାକ ଗାଁର ସମସ୍ତଙ୍କ ଭିତରେ ବାଣ୍ଟି ଦେବା ।' ସେଇଆ ହେଲା । ଏ ଖବର ଯେମିତି ବିନୋବାଜୀଙ୍କ କାନରେ ପଡ଼ିଲା, ସେ ତା'ର

ନାମ ଦେଲେ ଗ୍ରାମଦାନ । ମଙ୍ଗରୋଠ ଗାଁର ପହିଲି ଅମର କୀର୍ତ୍ତି ବିଷୟ ଚାରିଆଡ଼େ ଖେଳିଗଲା ।

ପୋଖରୀରେ ଟେକାପଡ଼ିଲେ ଚାରିଆଡ଼େ ତରଙ୍ଗ ଖେଳିଯାଏ । ସେମିତି ଗ୍ରାମଦାନର ବିଚାର ଭାରତସାରା ଲୋକଙ୍କ ମନକୁ ଛୁଇଁଲା । ଗାଁ ପରେ ଗାଁ, ଗୋଟି ଗୋଟି ହୋଇ ଜମି ଉପରୁ ମାଲିକାନା ଉଠାଇ ଦେଲେ । ଓଡ଼ିଶାର ପ୍ରଥମ ଗ୍ରାମଦାନ ହେଲା କଟକ ଜିଲାରେ– ତା' ନାଁ ମାନପୁର । ମାନପୁର କେନ୍ଦ୍ରାପଡ଼ା ଜିଲ୍ଲାର ଅନ୍ତର୍ଭୁକ୍ତ । ପରବର୍ତ୍ତୀ କାଳରେ ବହୁଦିନ ଧରି ଆଚାର୍ଯ୍ୟ ମହାଶୟଙ୍କ ସେବାରେ ନିଜକୁ ନିୟୋଜିତ କରଥିବା କର୍ମୀ ସଚ୍ଚିଦାନନ୍ଦ ମହାନ୍ତିଙ୍କ ଉଦ୍ୟମ ଯୋଗେ ଏହା ସମ୍ଭବ ହୋଇ ପାରିଥିଲା ।

ପାହାଡ଼ର ଗୋଟିଏ ଜାଗାରୁ ପାଣି ବାହାରେ । କିନ୍ତୁ ସେ ପାଣି ବହିଚାଲେ ଶହ ଶହ ମାଇଲ । ସେମିତି ମାନପୁର ଗୋଟିଏ ହୋଇ ଗ୍ରାମଦାନ ହେବାପରେ ସେ ଧାରା ଯେ ପ୍ରଦେଶ ସାରା ମାଡ଼ି ଚାଲିବ, ଲୋକଙ୍କର ଏଥିରେ ବିଶ୍ୱାସ ହେଲା ।

୧୯୫୫ ମସିହା ଜାନୁଆରୀ ଛବିଶ । ବିନୋବାଜୀ ଚାଲି ଚାଲି ଆସି ଓଡ଼ିଶା ଭୁଇଁରେ ପାଦଦେଲେ । ଆଚାର୍ଯ୍ୟ ମହାଶୟ, ଗୋପବାବୁ, ରମାଦେବୀ, ଗୁଣନିଧି ମହାନ୍ତି, ପଣ୍ଡିତ ହୋତା ମହାଶୟ ଆଦି ସବୁ ମୁଖ୍ୟସେବକ-ସେବିକାମାନେ ତାଙ୍କୁ ଅଭ୍ୟର୍ଥନା କଲେ । ଖାଲି ସେହିମାନେ ନୁହଁନ୍ତି ସରକାରୀ ବେସରକାରୀ କେତେ ଲୋକ ସ୍ୱାଗତ ଉତ୍ସବରେ ଭାଗନେଲେ । ବଙ୍ଗଳା ଏବଂ ଓଡ଼ିଶାରେ ସେତେବେଳକୁ ଏକା କୋରାପୁଟ ଜିଲାରେ ଗ୍ରାମଦାନ ମିଳିଥାଏ ୨୬ ଖଣ୍ଡ । ଖାଲି ସେତିକି ନୁହେଁ, ୧୧୫୩୧୭ ଏକର ଜମି ଭୂଦାନରେ ପ୍ରଦେଶସାରା ଲୋକେ ଦେଇଥାଆନ୍ତି ।

ତା'ପରେ ଆରମ୍ଭ ହେଲା ବିନୋବାଜୀଙ୍କର ଉତ୍କଳ ପଦଯାତ୍ରା । ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ ଆଉ କୋରାପୁଟ ଜିଲାର ହଜାର ହଜାର ଲୋକ ତାଙ୍କ କଥା ଶୁଣିବାର ସୁଯୋଗ ପାଇଲେ । ସେତେବେଳକୁ ଆଚାର୍ଯ୍ୟ ମହାଶୟଙ୍କ ବୟସ ୭୮ । ଆଖିରେ ପରଳ ମାଡ଼ିଯିବା ଫଳରେ ତାଙ୍କୁ ଅତ୍ୟନ୍ତ ଅସ୍ପଷ୍ଟ ଭାବେ ଦିଶୁଥାଏ । ବିନୋବାଜୀଙ୍କ ପଦଯାତ୍ରାରେ ସେ ବି ଚାଲିବାକୁ ଲାଗିଲେ । ବିନୋବାଜୀଙ୍କର ଗୋଟିଏ ରହଣୀରୁ ଅନ୍ୟ ଏକ ରହଣୀର ଦୂରତା ଥାଏ ପ୍ରାୟ ୮/୧୦ ମାଇଲ । ସମସ୍ତେ କହନ୍ତି-''ଆଚାର୍ଯ୍ୟ ମହାଶୟ ! ଆପଣ ମଟରଗାଡ଼ିରେ ବସିକରି ଯାଆନ୍ତୁ ।'' ଗୋପବାବୁ କହନ୍ତି, ''ହରି ଭାଇନା, ଆପଣ ଯାଇପାରିବେ ନାହିଁ । ମୋଟେ କଥା ମାନୁ ନାହାନ୍ତି କାହିଁକି କହିଲେ ?''

ମାତ୍ର ଆଚାର୍ଯ୍ୟ ମହାଶୟ ଆପଣାର ପାକୁଆ ପାଟିକୁ ଅଳ୍ପ ମେଲା କରି ଟିକିଏ ହସି ଦିଅନ୍ତି । ଫିସ୍ ଫିସ୍ ପବନରେ ଦାଢ଼ି ହଲିଯାଏ । ତାଙ୍କ ପାଟିରୁ ଅନ୍ୟମାନେ ଶୁଣନ୍ତି, ''ଆପଣମାନେ ଭଲା କାହିଁକି ବ୍ୟସ୍ତ ହେଉଛନ୍ତି ?''

ବୟସରେ ସବୁଠୁଁ ସାନ ବ୍ୟାସଜୀ ଆପଣା ପେଟ ଉପରୁ ଧଳାବ୍ୟାଗ ଖଣ୍ଡକ ଏପାଖ ସେପାଖ କରି କହି ଉଠନ୍ତି, ''ଏ ବୁଢ଼ା ବଡ଼ ଜିଦ୍ ଖୋର । କାହା କଥା ଶୁଣିବେ ନା କରିବେ ?''- ଆଉ ସେ ନିଜେ ? ଫେଁ କରିଁ ହସି ଉଠନ୍ତି ପାଖରେ ଥିବା ଲୋକେ । ସେଇଠୁ –



ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଆର୍ଯ୍ୟ ନାୟକମ୍‌ଙ୍କ ସହିତ ହରିହର

(୪୨)

ପଦଯାତ୍ରା ଚାଲେ । ବିନୋବାଜୀଙ୍କ ସାଙ୍ଗରେ ଆଚାର୍ଯ୍ୟ ମହାଶୟ ମଧ ଚାଲନ୍ତି । ଯେ ଯେତେ ମନା କରୁଥାଆନ୍ତୁ ପଛକେ ସେ ମାନନ୍ତି ନାହିଁ ।

୧୯୫୫ ମସିହା କଥା । ଓଡ଼ିଶାରେ ବିନୋବାଜୀଙ୍କର ପଦଯାତ୍ରା ଚାଲିଥାଏ । ଏଣୁ ସର୍ବୋଦୟ ସମାଜର ସମ୍ମିଳନୀ ସେବର୍ଷ ପୁରୀଠାରେ ହେଲା । କେତେ ଲୋକେ ଆସିବେ । ତା' ଭିତରେ ଭାରତ ବାହାରୁ ଆସିଥିବା ଲୋକେ ବି ଥିବେ । ପୁଣି ଆହୁରି ପିଲା, ବୁଢ଼ା, ସ୍ତ୍ରୀ ହଜାର ହଜାର ସଂଖ୍ୟାରେ ଆସିବେ । ସେମାନଙ୍କର ରହିବା, ଖାଇବାର ସୁବନ୍ଦୋବସ୍ତ ନକଲେ ସମସ୍ତଙ୍କର ଧାରଣା ଖରାପ ହେବ । ପଣ୍ଡିତ ଗୋପବନ୍ଧୁ ପରା ଜେଲ ଭିତରେ ଘରକଥା ମନେ ପକେଇଲାବେଳେ 'ଅତିଥି ଆଦର' କଥା ତାଙ୍କ ମନେ ପଡ଼ିଥିଲା ! ଏଣୁ ଆଚାର୍ଯ୍ୟ ମହାଶୟ ଖାଲି ପଦଯାତ୍ରାରେ ବୁଲନ୍ତେ କ'ଣ ! ବିନୋବାଜୀ ଓଡ଼ିଶାରେ ପହଞ୍ଚିବାର ଅଳ୍ପ କେଇଦିନ ପରେ ସେ ସମ୍ମିଳନୀ କାମରେ ଲାଗିଲେ ।

କେଉଁଠୁ ଚାନ୍ଦା ଆସିବ, ଘର ତିଆରି ଲାଗି ବରଡ଼ା ତାଟି, ନଡ଼ିଆ ଚାଞ୍ଚ କେମିତି ମିଳିବ, ଆଗନ୍ତୁକମାନଙ୍କର ସେବା ଶୁଶ୍ରୁଷା ପାଇଁ ଯଥେଷ୍ଟ ସେବକ କେମିତି ମିଳିବେ- ଏସବୁ କାମରେ ଆଚାର୍ଯ୍ୟ ମହାଶୟ ଲାଗିଲେ ।

ଖାଲି ସେତିକି ନୁହେଁ । ଓଡ଼ିଶାର ସବୁଠାରୁ ବୟୋବୃଦ୍ଧ କର୍ମୀ ସେ । ଏଣୁ ସମ୍ମିଳନୀ ଆରମ୍ଭରୁ ଆଗନ୍ତୁକମାନଙ୍କୁ ସ୍ୱାଗତ କରିବାର ଦାୟିତ୍ୱ ତାଙ୍କରି ଉପରେ ପଡ଼ିଲା । ସମ୍ମିଳନୀଟି ସୁରୁଖୁରୁରେ ହେଲା ।

ମଝିରେ ସମ୍ମିଳନୀ ଯୋଗୁଁ ବିନୋବାଜୀଙ୍କର ଯାତ୍ରା ବନ୍ଦ ଥିଲା । ପୁଣି ତାହାପରେ ପୁରୀଠାରୁ ପଦଯାତ୍ରା ମୁହାଁଇଲା ଦକ୍ଷିଣକୁ କୋରାପୁଟ ଆଡ଼େ ।

ଗଞ୍ଜାମ ଜିଲାରେ ବୁଲୁଥିବା ବେଳେ ଆଚାର୍ଯ୍ୟ ମହାଶୟଙ୍କୁ କୁକୁର କାମୁଡ଼ିଲା । ଆଖିରେ ତାଙ୍କର ପରଳ, ଏଣୁ ସ୍ପଷ୍ଟ ଦେଖିପାରୁ ନଥାନ୍ତି । ବାଟରେ ଶୋଇଥିବା କୁକୁରଟା ଉପରେ ଯେମିତି ବାଡ଼ି ଖଣ୍ଡିକ ପଡ଼ିଯାଇଛି, ସେ କ'ଣ ଜାଣିଛି ଯେ ଏ ହେଉଛି ଆଚାର୍ଯ୍ୟ ମହାଶୟଙ୍କ ବାଡ଼ି ! ପଶୁ ତ ! ଏଣୁ ବିଚରା କାମୁଡ଼ି ଦେଲା । ଆଚାର୍ଯ୍ୟ ମହାଶୟଙ୍କୁ ଅଣାଗଲା କଟକ— ଭଲ ହେବାପାଇଁ ।

ଗାଡ଼ି ମରାମତ ହେଲେ ଭଲ ଚାଲେ । ଗୋଡ଼ ଭଲ ହେଲା ପରେ ଆଚାର୍ଯ୍ୟ ମହାଶୟ ପୁଣି ବେଶି ବୁଲିଲେ ।

ଏ ହେଉଛି କୋରାପୁଟ ଜିଲାର ଘଟଣା । ଆଚାର୍ଯ୍ୟ ମହାଶୟଙ୍କୁ ଜ୍ୱର ହେଲା । ତହୁଁ ତାଙ୍କୁ ଅଣାଗଲା କଟକ । ସେହିବର୍ଷ ସେପ୍ଟେମ୍ବର ଚାରିତାରିଖ ଦିନ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଭାରି ବନ୍ୟା ହେଲା ।

ତା' ଆଗରୁ ଲଗାତରଭାବେ ଯେଉଁ ବର୍ଷା ଏବଂ ତୋଫାନ ହେଲା, ସେ କଥା କହିଲେ ନ ସରେ । ପୁଣି ଆଚାର୍ଯ୍ୟ ମହାଶୟ ପଡ଼ିଲେ ଜ୍ୱରରେ । ଜ୍ୱର ଟାଇଫଏଡ୍‌ର ରୂପ ନେଲା । ସେ ସଂଜ୍ଞାହୀନ ଅବସ୍ଥାରେ ପଡ଼ି ରହିଲେ ବିଛଣାରେ । ସମସ୍ତଙ୍କ ମନରେ ଆଶଙ୍କା ହେଲା । ମାତ୍ର ସବୁରି

ମନର ମମତା ବଳରେ ଆଚାର୍ଯ୍ୟ ମହାଶୟ ଭଲ ହୋଇଗଲେ ।

୧୯୫୫ର ଅକ୍ଟୋବର ମାସରେ ବିନୋବାଜୀ ଓଡ଼ିଶା ଭୂଇଁରୁ ବିଦାୟ ନେଲେ । ସେତେବେଳକୁ ୪୬ ଖଣ୍ଡରୁ ଟପି ଓଡ଼ିଶାରେ ୮୧୨ ଖଣ୍ଡ ଗ୍ରାମଦାନ ହେଲାଣି । ବିନୋବାଜୀଙ୍କ ଆଗମନ ଫଳରେ ଲୋକଙ୍କ ଭିତରେ ଯେଉଁ ଉତ୍ସାହ ସୃଷ୍ଟି ହେଲା, ତାକୁ ଧରି ରଖିବାଲାଗି ଆଚାର୍ଯ୍ୟ ମହାଶୟ ପ୍ରମୁଖ ବିଚାର କଲେ । ଏଇ ଉତ୍ସାହ ଭରସାରେ କର୍ମୀମାନେ ଗାଁକୁ ଗାଁ ବୁଲିଲେ । ଆଚାର୍ଯ୍ୟ ମହାଶୟ ବସି ରହିଲେ ନାହିଁ ।

ଆଗରୁ ବ୍ୟବସ୍ଥିତ କାର୍ଯ୍ୟକ୍ରମର ସୂଚନା ଦିଆଯାଇ ନଥାଏ, ଗାଁରେ ପହଁଚିବା କି ଅଭ୍ୟର୍ଥନା କରିବା ପାଇଁ ଲୋକ ଫୁଲମାଳ ଧରି ବସି ନଥାନ୍ତି । କିଏ ଯାଇଥାଏ ହଳ କରିବାକୁ ତ ଆଉ କିଏ ଘାସ ଛେଲିବାକୁ ଯାଇଥାଏ । କେତେବେଳେ ଦିନ ଏଗାରଟାବେଳେ ତ କେତେବେଳେ ସଞ୍ଜ ପହରକୁ ଲୋକଙ୍କ ଦେଖା ମିଳେ ।

ସାଙ୍ଗରେ ଥିବା ପିଲାଏ (ବୟସ ତାଙ୍କର ଚାଳିଶି ଡେଇଁ ସାରି ଆଉ ପଛକେ) ତାଙ୍କର ବିଛଣା ଧରିଥାଆନ୍ତି । ଆଚାର୍ଯ୍ୟ ମହାଶୟ ପହଞ୍ଚନ୍ତି ଗାଁରେ । ଭୋକ ଲାଗୁଥାଏ । ଅପନ୍ତରା ଗାଁ ଗହଳି ମଧ୍ୟରେ କେଉଁଠି ମାଣ୍ଡିଆ ଜାଉ କି କେଉଁଠି ପଖାଳ ମିଳିଲା-ତା'ର ବିଚାର କରିବାକୁ ବେଳ ନଥାଏ । ବଡ଼ଲୋକ ଘରର କ୍ଷୀରିପୁରୀଠାରୁ ଆଦିବାସୀ ଘରର ମାଣ୍ଡିଆ ଜାଉ କିମ୍ବା ଧାନକୁଟୁଣୀର ପଖାଳ ଶାଗ ତାଙ୍କର ଭାରି ପ୍ରିୟ । ସବୁ ସେ ଚଳେଇ ନିଅନ୍ତି । ପୁଣି ତାଙ୍କର ମନ୍ତ୍ର ହେଉଛି ''ଉଦର ଭରଣ ନୁହେଁ, ଜାଣ ଏ ଯଜ୍ଞ କର୍ମ''-ଯଜ୍ଞ କର୍ମରେ ବାଛ ବିଚାର ପୁଣି କାହିଁକି ? ଗାଁକୁ ଗାଁ ସଭା ହୁଏ । ଆଚାର୍ଯ୍ୟ ମହାଶୟଙ୍କ ତୁଣ୍ଡରୁ ଭୂଦାନ ବିଷୟରେ ଲୋକେ ଶୁଣନ୍ତି । ଗରିବଙ୍କ ଲାଗି ଜମି ମିଳେ । ଆଉ କେଉଁଠି ଗ୍ରାମଦାନ ମଧ୍ୟ ହୁଏ । ରାତି ହେଲେ ଗାଁ ଭିତରର କୌଣସି ପିଣ୍ଡାରେ ଆଚାର୍ଯ୍ୟ ମହାଶୟଙ୍କ ବିଛଣା ଖୋଲିଦିଆଯାଏ । ସେ ଶୋଇପଡନ୍ତି । ପରଦିନ ସକାଳୁ ପୁଣି ଚାଲେ ସେଇ ଭୂଦାନ କଥା — ସେଇ ପଦଯାତ୍ରା ।

## (୪୩)

ଭୂଦାନ ଦେଶସାରା ଭାରି ଗୋଟାଏ ଚହଳ ପକେଇଦେଲା । ଛୋଟ ବଡ଼ ସରକାରୀ କର୍ମଚାରୀ, ରାଜନୀତି କରୁଥିବା ନେତା ସ୍କୁଲ କଲେଜର ଛାତ୍ର-ଅଧ୍ୟାପକ, ଯୋଗସାଧନା କରୁଥିବା ସନ୍ୟାସୀ ପ୍ରଭୃତି ସବୁ ରକମର ଲୋକ ଆସି ଏଥିରେ ମିଶିଲେ । ପୁଣି ପିଲାକବିଲା ଧରି ପଡ଼ି ରହିଥିବା କର୍ମୀଙ୍କ ସଂଖ୍ୟା ଏଥିରେ କିଛି କମ୍ ହେଲାନାହିଁ ।

ଭୂଦାନ କାମରେ ପ୍ରଥମେ ପ୍ରଥମେ ଘର-ସଂସାର କରିଥିବା କର୍ମୀମାନଙ୍କୁ କିଛି କିଛି ଆର୍ଥିକ ସାହାଯ୍ୟ ଦିଆଯାଉଥିଲା । ମହାତ୍ମା ଗାନ୍ଧୀଙ୍କ ସ୍ମୃତିରକ୍ଷା ପାଇଁ ଗାନ୍ଧୀ ସ୍ମାରକ ନିଧି ନାମରେ ଏକ ଅନୁଷ୍ଠାନ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ବିଭିନ୍ନ ଗଠନମୂଳକ କାମ କରୁଥିଲେ । ବିନୋବାଜୀଙ୍କ ଭୂଦାନ କଥା ଏହି ଅନୁଷ୍ଠାନର ପରିଚାଳକମାନଙ୍କ ମନକୁ ପାଇଲା ଓ ସେମାନେ ଦେଶବ୍ୟାପୀ ଭୂଦାନ କାମରେ ଲାଗିଥିବା କର୍ମୀମାନଙ୍କୁ ସାହାଯ୍ୟ କରି ଚାଲିଲେ । ଏ ସାହାଯ୍ୟ ଦାନ ୧୯୫୩ରୁ ୧୯୫୬

ମସିହା ଶେଷ ପର୍ଯ୍ୟନ୍ତ ଚାଲିଲା । ତା'ପରେ ବିଚାର ପଡ଼ିଲା, 'ଦେଶର ଆନ୍ଦୋଳନକୁ ଦେଶ ଉଠାଇବ କିପରି ?' ଯଦି ପଞ୍ଚାଏ ଲୋକ ପଇସାପତ୍ର ନେଇ କାମ କରିବେ ଏ ଖାଲି ତେବେ ଚାକିରୀ ହୋଇଯିବ ସିନା, ଏଥିରୁ ଆନ୍ଦୋଳନ ହେବନାହିଁ । ଏଣୁ ୧୯୫୭ ଆରମ୍ଭରୁ କୌଣସି ଭୂଦାନକର୍ମୀ ସାହାଯ୍ୟ ନେଲେ ନାହିଁ ।

କିନ୍ତୁ ଖାଇବା ଲାଗି, ରହିବା ଲାଗି ମଣିଷର ଯେଉଁ ବାହାର ଜିନିଷତକ ଦରକାର, ସେତକ ପ୍ରତ୍ୟେକକୁ ତ ମିଳିବା ଦରକାର । ଏଣୁ ଏସବୁ ପୁଣି ଆସିବ କେମିତି ? ଆଚାର୍ଯ୍ୟ ମହାଶୟ ପ୍ରମୁଖ ସମସ୍ତେ ବସି ଏ ସମ୍ପର୍କରେ ଭାବିଲେ । କଥା ହେଲା ଯେ, ସବୁ ଲୋକଙ୍କ ଘରୁ ଯଦି ଆନ୍ଦୋଳନ ପାଇଁ ମୁଠିଏ ମୁଠିଏ ଚାଉଳ ଆସେ, ତେବେ କର୍ମୀଙ୍କ ଖାଇବାଲାଗି ଚଳିଯିବ । ରହିବା ଓ ଅନ୍ୟାନ୍ୟ ଖର୍ଚ୍ଚ ବି ଅଭାବ ପଡ଼ିବ ନାହିଁ । ବିନା ପଇସାରେ କର୍ମୀଙ୍କ ମନ ଠିକ୍ ରହିଲେ ସିନା କାମ ଆଗେଇବ । ଏଣୁ ଆଚାର୍ଯ୍ୟ ମହାଶୟ ଏଥର କାର୍ଯ୍ୟର ତଦାରଖ କରିବା ଛାଡ଼ି କର୍ମୀଙ୍କ ସେବା କରିବାରେ ଲାଗି ପଡ଼ିଲେ । ଗାଁକୁ ଗାଁ ଯାଇ ଭୂଦାନ-ପାତ୍ର ବସେଇଲେ । ଆଗରୁ କେତେକ ବନ୍ଧୁ ଆଚାର୍ଯ୍ୟ ମହାଶୟଙ୍କ ହାତରେ ନିୟମିତ କିଛି କିଛି ଟଙ୍କା ଚାନ୍ଦା ଦେଉଥିଲେ । ଏଥର ସେ ତାହା ଗ୍ରହଣ କରିବାକୁ ସଫା ସଫା ମନା କରିଦେଲେ । ସେମାନଙ୍କୁ କହିଦେଲେ ଯେ, ''ଆମେ ଏଥର ଭୂଦାନ-ପାତ୍ରରେ ଚଳିବୁ ।''

ଗାନ୍ଧୀଜୀଙ୍କ ବିଚାର ସଂକ୍ଷେପରେ କହିଲେ, ତା'ର ନାମ ହେବ 'ସର୍ବୋଦୟ' । ଏଣୁ ଭୂଦାନ ପାତ୍ର ବଦଳରେ 'ସର୍ବୋଦୟ ପାତ୍ର' ନାମଟା ଲୋକଙ୍କୁ ବେଶ୍ ଭଲ ଲାଗିଲା । ଆଚାର୍ଯ୍ୟ ମହାଶୟ କହିଲେ, ''ଏଥିରେ ପିଲାଏ ଚାଉଳ ପକାଇବେ । ଆଉ ଯେଉଁ ପିଲେ ଚାଉଳ ପକାଇବେ, ସେମାନେ କଳି କରିବା ଠିକ୍ ହେବ ନାହିଁ ।''

ସତକୁ ସତ ଭୁବନେଶ୍ୱରରେ ଜଣେ ବନ୍ଧୁଙ୍କ ଘରେ ଆଚାର୍ଯ୍ୟ ମହାଶୟ ଓ ପଣ୍ଡିତ ହୋତା ବସିଥାଆନ୍ତି । ବନ୍ଧୁଙ୍କର ବୋହୂ ଆସି ପ୍ରଣାମ କଲେ । ହସି ହସି କହିଲେ, ''ଦଦେଇ, ଆପଣଙ୍କ ପାତ୍ର ଆମ ଘରୁ କଜିଆ ତୁଟେଇ ଦେଲା ।'' ହଠାତ୍ ଆଚାର୍ଯ୍ୟ ମହାଶୟ କଥାଟା ଠିକ୍ ରୂପେ ଧରିପାରିଲେ ନି । ତହୁଁ ବିଷୟଟା ପରିଷ୍କାର କରିବାକୁ ଯାଇ ବୋହୂ କହିଲେ, ''ଆପଣ ଯେଉଁଦିନୁ କହିଦେଇ ଗଲେଣି ଯେ, ସର୍ବୋଦୟ ପାତ୍ରରେ ଚାଉଳ ପକେଇଲେ, ପିଲାଏ କଜିଆ କରିବା ଅନୁଚିତ୍- ସେହିଦିନଠାରୁ ଆମଘରୁ କଳି ପଳେଇଲାଣି । କୁନା, ବୁନା ଆଉ ମୋଟେ କଳି କରୁନାହାନ୍ତି ।

ଲୋକଙ୍କର ସେବା କରୁଥିବା ସାଧାରଣ କର୍ମୀଙ୍କର ଅଭାବ, ଅସୁବିଧାପ୍ରତି ଆଚାର୍ଯ୍ୟ ମହାଶୟଙ୍କର ବିଶେଷ ଦୃଷ୍ଟିଥାଏ । ଆଚାର୍ଯ୍ୟ ମହାଶୟଙ୍କୁ ପାଇଲେ ସେମାନେ ନିଜର ଆପଣାର ଲୋକଟିଏ ପାଇଲା ଭଳି ଅନୁଭବ କରି ସବୁକଥା ଖୋଲି କହନ୍ତି ।

ନିମାପଡ଼ାର ଏଇମିତି ଜଣେ ସାଧାରଣ କର୍ମୀଙ୍କ କଥା – ଚାରି ଛ'ଦିନ ଭିତରେ ପୁଅର ପରୀକ୍ଷା ଫି, ଦେଇ ନ ପାରିଲେ, ଏକାଦଶ ଶ୍ରେଣୀର ପରୀକ୍ଷା ସେ ଦେଇପାରିବ ନାହିଁ । ପ୍ରାୟ

ପଚାଶ ଟଙ୍କା ଖଣ୍ଡେ ନିହାତି କମ୍‌ରେ ଦରକାର । ଏଇକଥା ଭାବି ସେ ବଡ଼ ବ୍ୟସ୍ତ ହୋଇ ପଡ଼ିଥାଆନ୍ତି ।

କହନ୍ତେ ବା କାହାକୁ ? ମନକୁ ହଠାତ୍ ବୁଦ୍ଧି ଆସିଲା- ଆଚାର୍ଯ୍ୟେ ଅଛନ୍ତି । କିନ୍ତୁ ସେ କେଉଁଠି ଥିବେ ? ଖବର ମିଳିଲା ଯେ ଆଚାର୍ଯ୍ୟ ମହାଶୟ କଟକ ଯାଇଛନ୍ତି ।

ସେ କଟକ ଆସିଲେ । ଭୂଦାନ ଅଫିସରେ ପହଞ୍ଚିଲାବେଳକୁ ଦିନ ଗୋଟାଏ । ଆଚାର୍ଯ୍ୟ ମହାଶୟ ଭୂଦାନ ଅଫିସର ପିଣ୍ଡାରେ ବିଛଣାଟିକୁ ମୁଣ୍ଡ ତଳେ ଦେଇ ଶୋଇପଡ଼ି ଥାଆନ୍ତି । ସେ ଅପେକ୍ଷା କଲେ । ଆଚାର୍ଯ୍ୟ ମହାଶୟ ନିଦରୁ ଉଠି ତାଙ୍କଠାରୁ ଶୁଣିଲେ ଯେ, ପଚାଶ ଖଣ୍ଡେ ଟଙ୍କା ତାଙ୍କର ଦରକାର, ଟିକିଏ ଚିନ୍ତା କଲେ । ''କିଛି ଚିନ୍ତା ନାହିଁ'' ବୋଲି ପରାମର୍ଶ ଦେଲେ ।

ଖରା ଟିକିଏ ନଇଁଲା । ତା'ପରେ ଉଭୟେ ଚାଲିଲେ ଉତ୍କଳ ଭୀମ ପଦ୍ମଚରଣଙ୍କ ପାଖକୁ ।

ଆଚାର୍ଯ୍ୟ ମହାଶୟଙ୍କ କହିଦେବା ମାତ୍ରେ ସେ ପଚାଶ ଟଙ୍କା ସଙ୍ଗେ ସଙ୍ଗେ ବାହାର କରିଦେଲେ ।

ଏଇମିତି କେତେ କର୍ମୀଙ୍କ ପାରିବାରିକ ସମସ୍ୟା ତୁଟାଇବାରେ ଆଚାର୍ଯ୍ୟ ମହାଶୟଙ୍କର ହାତ ଅଛି, ତା'ର ସୀମା ନାହିଁ । ପୁଣି ଯେତେ କର୍ମୀ ନୂଆ କରି ଘର ସଂସାର କରିବାକୁ ଯାଆନ୍ତି – ସମସ୍ତେ ଆଚାର୍ଯ୍ୟ ମହାଶୟଙ୍କର ଆଶୀର୍ବାଦ ନପାଇଲେ ଶୁଭ ସମୟ ହେଲା ନାହିଁ ବୋଲି ମନେକରନ୍ତି । ଏଇମିତି ଆଚାର୍ଯ୍ୟ ମହାଶୟଙ୍କୁ କେନ୍ଦ୍ର କରି ସାରା ଓଡ଼ିଶାରେ ଏକ କର୍ମୀ-ପରିବାର ଆଜି ଗଢ଼ିଉଠିଛି । ବରୀ ଆଶ୍ରମରେ କିମ୍ବା ବାଜୀରାଉତ ଛାତ୍ରାବାସରେ ଜାତିଆଣ ବିବେଚନାକୁ ବର୍ଜନ କରି ଯେତେ ବାହାଘର ଘଟିଛି ସବୁଥିରେ ସେ ପୌରୋହିତ୍ୟ କରିଛନ୍ତି ।

ସେଦିନ ୧୯୫୮ ମସିହାର ଅପ୍ରେଲ ୨୯ ତାରିଖ । ଓଡ଼ିଶାରେ ଭୂଦାନ କାମରେ ନିଅଁ ପକେଇଥିବା ଗୋପବାବୁଙ୍କର ପରଲୋକ ହୋଇଗଲା । ସେ ଥିଲେ ଆନ୍ଦୋଳନର ନେତା । ତାଙ୍କର ବିୟୋଗ ସମସ୍ତଙ୍କୁ ବଡ଼ ଧକ୍କା ଦେଲା । ସେଦିନ ରାତିରେ ତାଙ୍କର ମୃତ୍ୟୁ ଶରୀର ପାଖେ କେତେ ପରିଚିତ ବନ୍ଧୁ ବାନ୍ଧବ ଆସି ଲୁହ ଗଡ଼ାଇଲେ । ଦୁଃଖରେ ଅଭିଭୂତ ହୋଇ ପଡ଼ିଲେ ସମସ୍ତେ । ମାତ୍ର ଜୀବନରେ ଚାରିଚାରିଟା ଦଶନ୍ଧି ଯେଉଁ ହରିଭାଇନାଙ୍କ ସହିତ ସେ କଟାଇଗଲେ, ତାଙ୍କ ଆଖିରେ ଲୁହ କେହି ଦେଖିଲା ନାହିଁ ।

ଥୋରିଆ ସାହିର ଭୂଦାନ ଅଫିସ କାନ୍ଥ କଡ଼କୁ ଆଉଜି ସେ ଧୃତରାଷ୍ଟ୍ର ପରି ଚକା ପକାଇ ବସିଥାଆନ୍ତି । ଆଖିରେ ଲୁହ ନଥାଏ । ମୁହଁ ତାଙ୍କର ଅସାଧାରଣ ଭାବେ ଗମ୍ଭୀର ହୋଇ ଯାଇଥାଏ । ୧୯୫୯ରେ ପ୍ରଥମଥର ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଡକ୍ଟରେଟ ପ୍ରଦାନ କରିବାକୁ ଅନୁମତି ପାଇଥାଏ । ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ସେ 'ସେବା' ପାଇଁ ଓ ତା ସାଙ୍ଗକୁ ନୀଳକଣ୍ଠ ଦାସ ଓ ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଆ ସାହିତ୍ୟ ପାଇଁ ଡକ୍ଟରେଟ ପାଇବା କଥା । ସ୍ୱଭାବ ସୁଲଭ ଭାବରେ ଆଚାର୍ଯ୍ୟ ମହାଶୟ ଓ ଗୋପବାବୁ ଖବର କାଗଜ ମାଧ୍ୟମରେ କୁଳପତି ପ୍ରାଣକୃଷ୍ଣ ପରିଜାଙ୍କୁ ଜଣେଇଦେଲେ ଯେ, ସେବା ପାଇଁ ଆମକୁ ଡକ୍ଟରେଟ ଦିଆଯିବତ ଓଡ଼ିଶାର ସବୁ ମାଆମାନଙ୍କୁ

ଡକ୍ଟେରେଟ ମିଳିବା ଉଚିତ୍ । ଆମେ କ'ଣ ସେମାନଙ୍କ ଠାରୁ ବେଶୀ ସେବା କରିଛୁ ?'

ଏ ପାଖରେ ଗୋପବାବୁଙ୍କ ପାଇଁ ଡକ୍ଟେରେଟର ମସୁଧା ଚାଲିଥିବା ବେଳେ କିଏ ଜାଣିଥିଲା ଯେ ସେ ପାଖପାଇଁ ତାଙ୍କର ଦିନ ପୂରିଆସିଲାଣି ?

କିଏ ଜଣେ କହିଲେ ଯେ, ''କାଲି ଅନ୍ତତଃ ବୁଲୁ ବାବୁ (ଶ୍ରୀ ମନମୋହନ ଚୌଧୁରୀ, ଗୋପବାବୁଙ୍କର ପୁଅ) ଆସିବା ପର୍ଯ୍ୟନ୍ତ ଶବ ରଖାଯାଉ ।'' ଆପତ୍ତି କରିବାର ଏଥିରେ କିଛି ନ ଥିଲା । ମାତ୍ର ଆଚାର୍ଯ୍ୟ ମହାଶୟ କହି ଉଠିଲେ, ''ଏଇତ ! ବାସୀ ମଡ଼ା ହେବା ବଡ଼ ଲୋକମାନଙ୍କର ଦୁର୍ଭାଗ୍ୟ ।'' ବାସ୍ !

## (୪୪)

ଗୋପବାବୁଙ୍କ ଚାଲିଯିବାପରେ ଓଡ଼ିଶାର ଭୂଦାନକର୍ମୀ ମହଲରେ ଭୟଙ୍କର ନୈରାଶ୍ୟ ଦେଖାଦେଲା । ପ୍ରତ୍ୟେକେ ନିଜକୁ ଅସହାୟ ମନେକଲେ । ସେନାପତିଙ୍କ ଅଭାବରେ ସୈନ୍ୟମାନେ ଯେମିତି ଛତ୍ରଭଙ୍ଗ ଦେବାକୁ ଆରମ୍ଭ କରନ୍ତି, ଅବସ୍ଥାଟା ଠିକ୍ ସେହିପରି ହେଲା । ଏତେବେଳେ ଆଚାର୍ଯ୍ୟ ମହାଶୟ ଆଉ ବସିରହି ଚିନ୍ତା କରନ୍ତେ କ'ଣ ?

ସମସ୍ତେ ପରା କହନ୍ତି, ''ଉତ୍କଳ ଭୀଷ୍ମ ଆଚାର୍ଯ୍ୟ ହରିହର ।'' ଶେଷ ମୂହୁର୍ତ୍ତରେ ସେନାପତି ସାଜି ସେ ବାହାରିଲେ । କର୍ମୀଙ୍କର ଉତ୍ସାହ ବଢ଼ାଇବା ଲାଗି, ଭୂଦାନର ବାର୍ତ୍ତା ଦୁଆରେ ଦୁଆରେ ପହଞ୍ଚାଇବା ଲାଗି, ସେ ଅଖଣ୍ଡ ପଦଯାତ୍ରାର ବ୍ରତ ଗ୍ରହଣ କଲେ ।

ଗୋପବାବୁଙ୍କ ମୃତ୍ୟୁ ପରେ ଓଡ଼ିଶାର ଭୂଦାନ କର୍ମୀମାନେ ଠିକ୍ କରିଥିଲେ ଯେ, ଭୂଦାନ କାମକୁ ଆଗେଇନେବା ଲାଗି ସାରା ଓଡ଼ିଶାରେ ଏକ ପଦଯାତ୍ରୀ ଦଳ ବୁଲିବେ । ଓଡ଼ିଶାର ଉତ୍ତର ସୀମାରୁ ଏହି ଯାତ୍ରା ଆରମ୍ଭ ହେବ ଏବଂ ବୟୋଜ୍ୟେଷ୍ଠ କର୍ମୀ ଆଚାର୍ଯ୍ୟ ମହାଶୟ ତା'ର ଶୁଭ ଦେବେ ।

ସେଦିନ ୧୯୫୮ ମସିହା ଅଗଷ୍ଟ ପନ୍ଦର । ସ୍କୁଲରେ ପାଠପଢ଼ା ବନ୍ଦ । ପିଲାଏ ପତାକା ଧରି ଗାଇ ଚାଲିଥିଲେ, ''ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ, ସ୍ୱାଧୀନ-ସ୍ୱାଧୀନ-ସ୍ୱାଧୀନରେ ।''ଛୋଟିଆ ଜଳେଶ୍ୱର ବଜାର କମ୍ପି ଉଠୁଥିଲା । ଆଚାର୍ଯ୍ୟ ମହାଶୟ ଓଡ଼ିଶାର ଏକଦମ୍ ଉତ୍ତରରେ ଥିବା ନାମ୍ପୋ ଗାଁରୁ ପଦଯାତ୍ରା ଆରମ୍ଭ କରିବେ । ଏଣୁ ଜଳେଶ୍ୱର ଷ୍ଟେସନରେ ଯାଇ ସେ ଯେତେବେଳେ ଓହ୍ଲାଇଲେ, ସ୍ଥାନୀୟ ପିଲାମାନେ ଏବଂ ପରିଚିତ ଲୋକେ ତାଙ୍କୁ ସ୍ୱାଗତ କଲେ । ସେଦିନ ଉପରଓଳି ନାମ୍ପୋ ହାଇସ୍କୁଲରେ ସାଧାରଣ ସଭା ହେଲା । ସର୍ବୋଦୟ ପାତ୍ର ବସାଇବା ପାଇଁ ଏବଂ ସର୍ବୋଦୟ ବିଚାରକୁ କାମରେ ଲଗାଇବା ପାଇଁ ଆଚାର୍ଯ୍ୟ ମହାଶୟ ଗାଁ ଲୋକଙ୍କୁ ନିବେଦନ କଲେ ।

ପରଦିନ ପଦଯାତ୍ରା ଚାଲିବାର କଥା । ଦୁଇ ରହଣୀ ଭିତରେ ଦୂରତା ୭ ମାଇଲ । ଆଚାର୍ଯ୍ୟ ମହାଶୟଙ୍କୁ ସମସ୍ତେ କହିଲେ, ''ଅନ୍ତତଃ ଆପଣ କିଛି ବାଟଯାଏ ବସ୍‌ରେ ଯାଆନ୍ତୁ ।'' ମାତ୍ର ସେ

କାହାରି କଥା ଶୁଣିଲେ ନାହିଁ ବରଂ ଉତ୍ତର ମିଳିଲା, ''ମୁଁ ପରା ପଦଯାତ୍ରା କରିବି ।'' ସତକୁ ସତ ଆଉ ତାଙ୍କର ପଦଯାତ୍ରା ରୋକିଲା ନାହିଁ । ତୃତୀୟ ରହଣୀ ଥିଲା ବାଲିମି । ସେ ଗାଁର ଲୋକେ ନିଜର ସବୁଯାକ ଜମି ନିଜ ନିଜ ଭିତରେ ବାଣ୍ଟି ନେଇଥିଲେ । ମାତ୍ର ସେଠାକୁ ଯିବାଲାଗି ଆଣ୍ଠୁଏ ଲେଖାଏଁ କାଦୁଅ । ଏକପଦୀ ହିଡ଼ ବାଟ । ଆଚାର୍ଯ୍ୟ ମହାଶୟ କଦାପି ଯାଇପାରିବେ ନାହିଁ । ଏଣୁ ତାଙ୍କୁ ପୁଣି ନାମ୍ପୋକୁ ଫେରାଇ ଦିଆଗଲା । ପରଦିନ ଆଚାର୍ଯ୍ୟ ମହାଶୟଙ୍କର ବରାଦ ହେଲା ଟିକିଏ ନକଜଡ଼ା କ୍ଷୀର ପାଇଁ । ନକଜଡ଼ା କ୍ଷୀର ଅଠାଳିଆ । ସାଇକେଲରେ ପ୍ୟାଚ ପକାଇଲା ଭଳି ମଳିମୁଣ୍ଡିଆ ଗାଁ ଲୋକେ ସେଇଥିରେ ଆପଣାର ଫଟା ଚମକୁ ଯୋଡ଼ନ୍ତି । ମାତ୍ର ଆଚାର୍ଯ୍ୟ ମହାଶୟଙ୍କର ତାହା ଦରକାର ହେଲା କାହିଁକି ଜାଣନ୍ତି ?

ନାମ୍ପୋକୁ ଚାଲି ଚାଲି ଆସୁଥିଲେ । ବାଟରେ ଭୀଷଣ ବର୍ଷା ହେଲା । ଉତ୍ତର ବାଲେଶ୍ୱରର ସୁବର୍ଣ୍ଣରେଖା କୂଳିଆ ମାଟି ତ ! ଟିକିଏ ଯେମିତି ଗୋଡ଼ ଖସିଯାଇଛି କାତୁ କରି ପଡ଼ିଗଲେ । ଏକେତ ଆଖିକୁ ଦିଶୁ ନଥିଲା- ଖାଲ ଅଛି କି ଢିପ ଅଛି । ସେଥିରେ ପୁଣି ଝୁପୁଝୁପୁ ବର୍ଷା ଦାଉ ସାଧୁଥିଲା । ଯେଉଁ ପିଲାଟିର ହାତଧରି ସେ ଚାଲିଥିଲେ ସେ ବିଚରା ହାତଧରି ଚଲେଇବାର କାଇଦା ଜାଣି ନଥିଲା । ଫଳରେ ପଦଯାତ୍ରାର ପହିଲି ଅନୁଭୂତି ମିଳିଲା ଗୋଟିଏ କଚଡ଼ା । ଆଚାର୍ଯ୍ୟ ମହାଶୟଙ୍କର ଆଣ୍ଠୁ ଆଉ ପାଦ ମଝିରେ ପ୍ରାୟ ଚାଖଣ୍ଡେ ଖଣ୍ଡେ ଛେଲି ହୋଇଗଲା ।

ହଁ, ପଛରେ ରହିଗଲା ଆଉ ଏକ ଅନୁଭବ । ପଦଯାତ୍ରା ଆରମ୍ଭ କରିବାଲାଗି ଯେତେବେଳେ ଆଚାର୍ଯ୍ୟ ମହାଶୟ କଟକରୁ ଗାଡ଼ିରେ ବସିଲେ, ତା'ପୂର୍ବରୁ ତିନିଥର ମିଳେଇ କରି ଦେଖିଥିଲେ ଜିନିଷପତ୍ର ସବୁ ଠିକ୍ ଅଛି କି ନାହିଁ । ମାତ୍ର ପରଦିନ ସକାଳୁ ସୋରୋଠାରୁ ଗାଡ଼ିରେ ଚଢ଼ିଲେ ବ୍ୟାସଜୀ । ସେ ପହଞ୍ଚିବା ମାତ୍ରେ ପଦଯାତ୍ରା ଲାଗି ଯାଉଥିବା ସମସ୍ତେ 'ପୁରୁବାଈଙ୍କ ଲଡୁ' ଖାଇବାରେ ବ୍ୟସ୍ତ ରହିଗଲେ ।

ପୁରୁବାଈ ଓଡ଼ିଶା ପ୍ରଦେଶର ସାଧାରଣ କ୍ଷେତ୍ରରେ କାମ କରୁଥିବା ଜଣେ ଅସାଧାରଣ ମହିଳା । ଗୁଜୁରାତ ପ୍ରଦେଶରୁ ଆସି ସେ ଓଡ଼ିଶାରେ ଅନେକବର୍ଷ କଟେଇଲେଣି । ବୟସ ତାଙ୍କର ନବେ ପାଖାପାଖି । ଗାନ୍ଧୀଜୀଙ୍କ ଗଠନ ମୂଳକ କାମରେ ସେ ମନପ୍ରାଣ ଦେଇ ଲାଗିଥାଆନ୍ତି । ବ୍ୟାସଜୀ, ଗୋପବାବୁ ଆଉ ଆଚାର୍ଯ୍ୟ ମହାଶୟଙ୍କୁ ସେ ଖୁବ୍ ସ୍ନେହ କରନ୍ତି । ସୋରୋ ବାଟ ଦେଇ ଆଚାର୍ଯ୍ୟ ମହାଶୟ ଗାଡ଼ିରେ ଯିବେ – ତାଙ୍କ ସାଙ୍ଗରେ ଥିବା ପିଲାମାନଙ୍କ ପାଇଁ (ବୟସ ଚାଳିଶି ଟପିଥାଉ ପଛକେ) ସେ 'ଲଡୁ' ପଠାନ୍ତି । ଆଚାର୍ଯ୍ୟ ମହାଶୟଙ୍କ ଲାଗି ଥିଲା ଶୁଖିଲା ଭଜା ଚୁଡ଼ାର ଗୁଣ୍ଡ । କାରଣ ଚାହା ଛଡ଼ା ଆଉ କେଉଁଥିରେ ସେ ଚିନି ଖାଆନ୍ତି ନାହିଁ ମାତ୍ର ଲଡୁଖିଆ ପର୍ବ ପରେ ଯେତେବେଳେ ଜିନିଷ ଅଣାଗଲା-ଦେଖାଗଲା ଜଳେଶ୍ୱରଠାରେ ଦୁଇଟିଯାକ ଲଣ୍ଠନ ଆଉ ନାହିଁ ।

ଆଚାର୍ଯ୍ୟ ମହାଶୟ ବଡ଼ ବ୍ୟସ୍ତ ହେଲେ । ତାଙ୍କର ବ୍ୟସ୍ତତା ଜିନିଷ ହଜିଗଲା ବୋଲି ନଥିଲା–ଥିଲା, ତାଙ୍କରି ଭାଷାରେ କହିଲେ, ''ଜଗୁଆଳିର ଅଯୋଗ୍ୟତା ପାଇଁ ।''

ଯାହାହେଉ, ପଦଯାତ୍ରା ଚାଲିଲା । ମାତ୍ର ଲଣ୍ଡନ ଯାହାଙ୍କ ଜିମାରେ ଥିଲା ସବୁଦିନ ପାଇଁ ରହିଗଲା ତାଙ୍କର ଜିନିଷ ହଜେଇବାର ବଦନାମ !

## (୪୫)

କଥାଥିଲା ଯେ, ଆଚାର୍ଯ୍ୟ ମହାଶୟ ପଦଯାତ୍ରା ଆରମ୍ଭ କରିଦେଇ ଚାଲିଆସିବେ । କିନ୍ତୁ ସେ ବରାବର ଚାଲିବେ ବୋଲି କହିଦେଲେ । ଆଗରୁ ଅବଶ୍ୟ ତାଙ୍କର ଯାତ୍ରା ଚାଲିଥିଲା । କିନ୍ତୁ ଅବ୍ୟାହତ ଭାବେ ଏମିତି ଚାଲିବ- ଏ ବିଶ୍ୱାସ କେହି କରି ନ ଥିଲେ ।

ସୁବର୍ଣ୍ଣରେଖା ପାରିହୋଇ ସେ ମୟୁରଭଞ୍ଜ ଆଡ଼େ ଚାଲିଲେ । ସେ ଜିଲାରେ କେତେକ ଗାଁ ଗ୍ରାମଦାନ କରି ଆପଣାର ମାଲିକପଣିଆ ପୂର୍ବରୁ ଲୋପ କରି ସାରିଥିଲେ । ଗାଁର ଯେତେକ ଜମି, ସବୁତକ ଗାଁର ହୋଇ ଯାଇଥିଲା । ଲୋକେ ଚାଷ କରୁଥିଲେ, ଖାଉଥିଲେ । କଳିକଜିଆ କିଛି ହେଉ ନ ଥିଲା ।

ଓସ୍ତିଆ ବୋଲି ଗୋଟିଏ ଗାଁରେ ପଦଯାତ୍ରୀ ଦଳ ପହଞ୍ଚିଲେ । ସେଦିନ ସଞ୍ଜବେଳେ ଗାଁରେ ସଭା ହେଲା । ପଦଯାତ୍ରୀ ଦଳ ଏବଂ ଆଚାର୍ଯ୍ୟ ମହାଶୟ ସମସ୍ତେ ଗାଁର କୋଠ ଖମାର ଘରେ ରହିଲେ । ୨ /୩ଟା ବଡ଼ ବଡ଼ ଅମାରରେ ଧାନ ଭର୍ତ୍ତି ହୋଇଥାଏ । ଲୋକଙ୍କୁ ପଚାରିବାରୁ ଜଣାଗଲା ଯେ, ତାହା ହେଉଛି କୋଠରେ ରଖା ଯାଇଥିବା ଧାନ । ଗାଁର ଭଲମନ୍ଦ ସମସ୍ତେ ମିଶି ଏତକ ଜମା କରି ରଖିଛନ୍ତି । ଗାଁ ମଝିରେ ଅବଶ୍ୟ କୋଠଘର । କିନ୍ତୁ ସେ ଘରେ ମୋଟେ କବାଟ ନଥିଲା । ଦୁଇଟିଯାକ ଦୁଆର ଏବଂ ଉପର ଜଳକବାଟ ବି ମୁକୁଳା । ଆଚାର୍ଯ୍ୟ ମହାଶୟ ସେ ଗାଁର ଜଣେ ଭାଇଙ୍କୁ ପଚାରିଲେ, ''ଆଚ୍ଛା, ଏଠି କବାଟ କରି ନାହାନ୍ତି କାହିଁକି ?''

ସାମାନ୍ୟ ହସିକରି ନିଜ ଗାଉଁଲି ଭାଷାରେ ସେ ଭାଇ ଜଣକ ଯେଉଁ ଉତ୍ତର ଦେଲେ, ତହିଁରେ ଆଚାର୍ଯ୍ୟ ମହାଶୟ ଅଭିଭୂତ ହୋଇ ପଡ଼ିଲେ । ତାହା କୌଣସି ପୋଥିଗତ ବିଦ୍ୟାର ଉଦ୍ଧୃତି ନୁହେଁ । ସେ ଭାଷାର ମର୍ମଥିଲା, ''ଆମ ଗାଁରେ ତ ସମସ୍ତଙ୍କର ଖାଇବାକୁ ଅଛି । କାହା ପାଖେ କମ୍ ନାହିଁ କି କାହାରି ପାଖେ ବେଶି ନାହିଁ । ଚୋରୀ କରିବ କିଏ ? ପୁଣି ଧାନ ତ ଅଛି । ବାହାର ଗାଁର ଯଦି କାହାର ଅଭାବ ପଡ଼ିବ- ସେ ଆସି ଲୁଚେଇ କରି ନେଲେ ନବ, ଆଉ କ'ଣ ! ଆମେ ଖାଇଥାଆନ୍ତୁ – ନ ହେଲେସେ ଖାଇବ ।'' ଅପାଠୁଆ ଗାଁଉଲି ମଣିଷ ମନରେ ଏ ଯୁଗର ଜଟିଳ ଅର୍ଥନୀତି ପ୍ରଭାବ ପକାଇ ପାରି ନ ଥିଲା – ଏହାର ସନ୍ଧାନ ଆଚାର୍ଯ୍ୟ ମହାଶୟ ପାଇଲେ । ଏଣିକି ସେ ଯୁଆଡ଼େ ଗଲେ, ଓସ୍ତିଆ ଗାଁର ସେହି ଛୋଟିଆ ଉଦାହରଣଟି ଦେଲେ । ଘରେ ଘରେ ସର୍ବୋଦୟ ପାତ୍ର ବସାଅ, ସାନ ବଡ଼ର ଭେଦ ନିଭେଇ ଭାଇ ଭାଇ ପରି ଚଳ – ଏଇଥିଲା ସମସ୍ତଙ୍କୁ ତାଙ୍କର ଅନୁରୋଧ ।

ପଦଯାତ୍ରାରେ ଭୋର ୪ଟାରେ ଘଣ୍ଟି ବାଜେ । ତା'ର ଦୁଇଘଣ୍ଟା ଆଗରୁ ଆଚାର୍ଯ୍ୟ ମହାଶୟ ଉଠି ଆପଣାର ନିତ୍ୟକର୍ମ ବଢ଼ାଇ ସାରି ଥାଆନ୍ତି । ସମସ୍ତେ ଉଠିବାପରେ ପ୍ରାର୍ଥନା ହୁଏ । ୪ଟାରୁ ୬ଟା ସମୟ ଭିତରେ ସମସ୍ତେ ନିଜ ନିଜର କାମ ଦାମ ଏପରିକି ଜଳଖିଆ ମଧ ସାରିଦିଅନ୍ତି । ଠିକ୍

୬ଟା ବେଳକୁ ପଦଯାତ୍ରା ଆରମ୍ଭ ହୁଏ । ଭୀଷଣ ବର୍ଷା, ହାଡ଼ଭଙ୍ଗା ଶୀତ କିମ୍ବା ଅନ୍ଧାର ଭରା କୁହୁଡ଼ି ପାଗ ହୋଇ ଥାଉ- କିଛି ଯାଏ ଆସେ ନାହିଁ । ପଦଯାତ୍ରା ଚାଲିବ ହିଁ ଚାଲିବ ।

ରାୟଗଡ଼ା ଜିଲ୍ଲାର ଏକ ଗାଉଁଲୀ ଅଞ୍ଚଳରେ ପଦଯାତ୍ରା ଚାଲିଥାଏ । ରାତିରେ ଖୁବ୍ ବର୍ଷା ହେଲା । ସକାଳୁ ପଦଯାତ୍ରା ବାହାରିବା ବେଳକୁ ବର୍ଷା ବାଡ଼େଉଥାଏ । ପଦଯାତ୍ରାରେ ସ୍ଥାନୀୟ ବ୍ୟବସ୍ଥାପକ ବିଶ୍ୱନାଥ ପଟ୍ଟନାୟକ ପରବର୍ତ୍ତୀ ରହଣୀରେ ଅପେକ୍ଷା କରି ଥାଆନ୍ତି । ସହଯାତ୍ରୀ ଦଳର କଥାମାନି ସେଦିନର ପଦଯାତ୍ରାକୁ ଅନ୍ତତଃ ବର୍ଷା ଟିକିଏ ଛାଡ଼ିବାଯାଏ ଅପେକ୍ଷା କରିବାକୁ ଆଚାର୍ଯ୍ୟ ମହାଶୟ ରାଜି ହେଲେ ।

ଗାଁ ମୁଣ୍ଡରେ ଗୋଟିଏ ପାହାଡ଼ି ନାଳ । ଅଧିକାଂଶ ସମୟରେ ତାହା ଶୁଖିଲା ପଡ଼ିଥାଏ । ମାତ୍ର ବର୍ଷା ହେତୁ ବର୍ତ୍ତମାନ ତା'ର ଭୀଷଣତା କହିଲେ ନସରେ । କଥାପଡ଼ିଲା, ପ୍ରବଳ ସ୍ରୋତରେ ଆଚାର୍ଯ୍ୟ ମହାଶୟ ଏ ନାଳଟି ପାର ହେବେ କେମିତି ? ତା'ଛଡ଼ା ନାଳର ପାଣି କେତେ ଗଭୀର ସେ କଥା କାହାରିକୁ ଜଣା ନାହିଁ । ''ତମେମାନେ ଡରନା ମୁଁ ପହଁରି ଯିବି ।'' — ଆଚାର୍ଯ୍ୟ ମହାଶୟ ଆଶ୍ୱାସନା ଦେଲେ । ଗାଁ ଲୋକେ ଚାହୁଁ ଥାଆନ୍ତି ପଦଯାତ୍ରୀ ଦଳ ଆଉ ଗୋଟାଏ ଦିନ ରହି ଯାଆନ୍ତୁ । ମାତ୍ର ଆଚାର୍ଯ୍ୟ ମହାଶୟଙ୍କର ଆଗ୍ରହ ପରବର୍ତ୍ତୀ ରହଣୀକୁ ଯିବାଲାଗି । ସେଠାରେ ଲୋକମାନେ ଅପେକ୍ଷା କରିଥିବେ । ଆଚାର୍ଯ୍ୟ ମହାଶୟଙ୍କ ଆଗ୍ରହ ଦେଖି ପଦଯାତ୍ରୀ ଦଳର ଦୁଇଜଣ କର୍ମୀ ହାତରେ ଗୋଟିଏ ଲେଖାଏଁ ବାଉଁଶ ଧରି ନାଳର ଏ ମୁଣ୍ଡରୁ ସେମୁଣ୍ଡଯାଏ ପାଣି ମାପି ଆସିଲେ । ଛାତିକରୁ କମ୍ ପାଣି ହେଲେ ବି ନାଳ ମଝିରେ ଗୋଟାକୁ ଗୋଟା ପଥର ଯୋଗୁଁ ସ୍ରୋତ ଖୁବ୍ ପ୍ରବଳ ।

ଆଚାର୍ଯ୍ୟ ମହାଶୟ ତ ଜଣେ କର୍ମୀଙ୍କ କାନ୍ଧରେ ଭରାଦେଇ ଚାଲନ୍ତି । ଏଥର ନାଳ ପାର ହେବା ବେଳକୁ ବି ସେଇ କଥା । ସେ ଭରାଦେଇ ଥାଆନ୍ତି କର୍ମୀଜଣଙ୍କ କାନ୍ଧ ଉପରେ ।

ଆଚାର୍ଯ୍ୟ ମହାଶୟଙ୍କ ଦୁଇକଡ଼ରେ ଥାଆନ୍ତି ପଦଯାତ୍ରୀ ଦଳର ନିଶାକର ଦାସ ଓ ରତନ ଦାସ ।

ପାହାଡ଼ିଆ ଅଞ୍ଚଳରେ ଖୋଲା ସ୍କୁଲ ଘରେ ରହଣୀ ପଡ଼ିଥିଲେ ଶୀତ ଟିକିଏ ବେଶୀ ଲାଗେ । ବେଳେବେଳେ ଗାଁ ଲୋକେ ପଦଯାତ୍ରୀ ଦଳଙ୍କ ଲାଗି ଭୂଇଁ ଉପରେ କୁଟା ପକେଇ ଥାଆନ୍ତି — ତଳଟା ଉଷୁମ ରଖିବା ପାଇଁ । ତଥାପି ପଦଯାତ୍ରୀ ଦଳକୁ ଶୀତୁଆ ପବନର ଦାଉ ଛାଡ଼ି ପାରୁଛି କେମିତି ? ତେବେ ୮୨ବର୍ଷର ଆଚାର୍ଯ୍ୟ ମହାଶୟ ଯୁବକ ଭଳି ବାଡ଼ି ଖଣ୍ଡକ ଧରି ଛାତି ଫୁଲେଇ ଠିଆହୋଇ ଗଲାପରେ, କୁଙ୍କୁରି କାଙ୍କୁରି ହୋଇ ବସି ରହିବାକୁ କାହାର ଅବା ମନ ହେବ ?

ପଦଯାତ୍ରାରେ କେତେ ରକମର ଲୋକ ଆସି ଯୁଟନ୍ତି । କିଏ ଆସେ ଥରେ ଆଚାର୍ଯ୍ୟ ମହାଶୟଙ୍କୁ ଦେଖିଯିବାକୁ, ଆଉ କିଏ ଅନୁଭବ ନେବାକୁ ଆସେ ତ କିଏ ସମୟ କଟାଇବାକୁ ଆସେ । ରାଜନୈତିକ କର୍ମୀ, ଛାତ୍ର, ସାଧାରଣ ସେବକ—ସମସ୍ତେ ପଦଯାତ୍ରାରେ ଯୋଗଦେବା ଫଳରେ ପଦଯାତ୍ରା ଅଧିକ ସରସ ହୁଏ । ପୁଣି ପରସ୍ପର ବିରୋଧୀ ଲୋକେ ବିଭିନ୍ନ ସମୟରେ ଏହି ଯାତ୍ରାରେ ଯୋଗଦିଅନ୍ତି । ମନେ ହୁଏ—ସତେ ଅବା ଆଚାର୍ଯ୍ୟ ମହାଶୟ ସମସ୍ତଙ୍କର, ସବୁ

ଆଦର୍ଶର ମିଳନ ପୀଠ । ପ୍ରକୃତରେ ତାଙ୍କର କେତେ ଆପଣାର ଲୋକ, ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ମୟୂରଭଞ୍ଜର କେଉଁ ଗାଁରେ କିଏ ଅଛନ୍ତି—ତାଙ୍କର ନାତିନାତୁଣି ଆସି ହେଲେଣି । ଗତ ୨୫ବର୍ଷ ହେଲା ତାଙ୍କ ସହିତ ମୋଟେ ସାକ୍ଷାତ ନାହିଁ । ଆଖିକୁ ଦିଶୁ ନଥିଲେ ବି କେବଳ ପାଟିରୁ ବାରିନେଇ ଆଚାର୍ଯ୍ୟ ମହାଶୟ କହିପକାନ୍ତି, ''ଆରେ, ପିଲେ କେମିତି ଅଛନ୍ତି ?''

ହୁଏତ ଗତ ପଚିଶି ବର୍ଷ ହେଲା ଭେଟ ହୋଇନାହିଁ । ମାତ୍ର କିଏ କ'ଣ କରୁଛି, କେମିତି ଅଛି—ଏସବୁ ଖବର ଗୋଟି ଗୋଟି କରି ତାଙ୍କର ଜିଭ ଆଗରେ ଥୁଆ । ପୁଣି ଯଦି କୌଣସି ଛାତ୍ର କିମ୍ବା ପରିଚିତ ଲୋକଙ୍କ ଘର ବାଟ ଦେଇ ସେ ଯାଉଥିବେ, ତେବେ ତାଙ୍କୁ ଖବର ନଦେଇ ଚାଲିଯିବେ ନାହିଁ । ପଦଯାତ୍ରାରେ ବିଭିନ୍ନ ସ୍ଥାନରେ ପୁରାତନ ଛାତ୍ରମାନଙ୍କ ସଙ୍ଗେ ଆଚାର୍ଯ୍ୟ ମହାଶୟଙ୍କର ଭେଟ ଯେ ବାସ୍ତବିକ କେଡ଼େ ହୃଦୟସ୍ପର୍ଶୀ—ତାହା ନ ଦେଖିଲେ ବୁଝିପାରିବା କଷ୍ଟକର କଥା ।

## (୪୬)

ଯେ କୌଣସି କାମ ହାତକୁ ନେଲେ ତାକୁ ପୂରା ନକରି ଛାଡ଼ିବା ଆଚାର୍ଯ୍ୟ ମହାଶୟଙ୍କ ଅଭ୍ୟାସର ବାହାରେ । ପଦଯାତ୍ରା ଆରମ୍ଭ ହେଲାମାନେ ସାରା ଓଡ଼ିଶା ଘେରାଏ ବୁଲିଆସିବା ଦରକାର । ଏଣୁ ଜିଲ୍ଲା ପରେ ଜିଲ୍ଲା ସେ ବୁଲି ଚାଲିଲେ । ବାଲେଶ୍ୱର, ମୟୂରଭଞ୍ଜ, କେଉଁଝର ପରେ ଆସିଲା କଟକ ଜିଲ୍ଲା । କୋରେଇ ବାଟେ ଯାଜପୁର ହୋଇ ସେ ବରିଆଡ଼େ ଚାଲିଲେ । ବାଟରେ ପଡ଼ିଲା ଛତ୍ରପଡ଼ା ଗାଁ । ଏଇଠି ପଦ୍ମନାଭ ବାବୁଙ୍କ ଘର । ଓଡ଼ିଶା ସାରା ଚାଲିଥିବା ଏହି ପଦଯାତ୍ରାକୁ ଆରମ୍ଭ କରିଥିଲେ ଆଚାର୍ଯ୍ୟ ମହାଶୟ, ବ୍ୟାସଜୀ, ପଦ୍ମନାଭ ରାୟ ଓ ମନମୋହନ ଚୌଧୁରୀ । ଯେତେବେଳେ ଆଚାର୍ଯ୍ୟ ମହାଶୟ ଏକାକୀ ଚାଲିବାର ସିଦ୍ଧାନ୍ତ କଲେ, ଅନ୍ୟମାନେ ଫେରିଆସିଲେ ନିଜ ନିଜ ସ୍ଥାନକୁ । ବାଟରେ ପୁଣି ସେମାନେ ଯୋଗଦେଇ ଚାଲିଲେ ।

ଛତ୍ରପଡ଼ାଠାରେ ବିପୁଳ ସମ୍ବର୍ଦ୍ଧନା କରାଗଲା ପଦଯାତ୍ରୀମାନଙ୍କୁ । ଅଭ୍ୟର୍ଥନାର ଏଇ ଆଡ଼ମ୍ବର ଭିତରେ ଆଚାର୍ଯ୍ୟ ମହାଶୟ ଫେରି ଯାଇଥିଲେ ସତର ବର୍ଷ ତଳକୁ । ସେ ହେଉଛି ୧୯୪୨ର କଥା । ପୋଲିସର ଜୁଲମ୍, ଲୋକଙ୍କର ଉତ୍ସାହ, ପଦ୍ମନାଭ ବାବୁଙ୍କ ବୀରତ୍ୱ- ଏସବୁ ଗୋଟି ଗୋଟି ହୋଇ ତାଙ୍କ ସ୍ମୃତିରେ ଭାସି ଉଠିଥିଲା । ପୁଲିସ ଘେର ଭେଦକରି ତାଙ୍କ ଯୋଗୁଁ ଯାଜପୁରର ସରକାରୀ ଅଫିସ ଉପରେ ପଦ୍ମନାଭ ବାବୁ ଜାତୀୟ ପତାକା ଉଡ଼ାଇଥିଲେ । ସ୍ଥାନୀୟ ଅଞ୍ଚଳରୁ ବହୁତ ସ୍ୱାଧୀନତା ସଂଗ୍ରାମୀ ବହାରିଥିଲେ । ଛତ୍ରପଡ଼ା ଗାଁରେ ସେଦିନ ଅଭ୍ୟର୍ଥନାର ଉତ୍ତର ଦେଇଥିଲେ ସେ ଭାଷାରେ ନୁହେଁ, ଅଶ୍ରୁରେ ।

ଛତ୍ରପଡ଼ା ଓ କଲ୍ୟାଣପୁର ପରେ ଆସିଲା ବରୀ । ଏଇ ଗାଁରେ ଆଚାର୍ଯ୍ୟ ମହାଶୟ ପ୍ରତି ଘରେ ପରିଚିତ । ଗୋପବାବୁଙ୍କ କର୍ମକ୍ଷେତ୍ର ଏଇଠି । ସେ ସିନା ଆଜି ନାହାନ୍ତି । କିନ୍ତୁ ତାଙ୍କର ସ୍ମୃତି ରହିଛି— ଏ ଅଞ୍ଚଳର ବାଡ଼ି-ବଗିଚା, ଫଳ ଫୁଲରେ । ବରୀରେ ସେବାଘର ପ୍ରତିଷ୍ଠା କରି ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ସ୍ଥାନୀୟ ଗ୍ରାମବାସୀଙ୍କ ଭିତରେ ଗୋଟାଏ ନୂଆ ରକମର ଆତ୍ମ ପ୍ରତ୍ୟୟ ଆଣି ଦେଇଥିଲେ । ସେଥିପାଇଁ ନିଶାନିବାରଣ, ସୂତାକଟା, ଅସ୍ପୃଶ୍ୟତା ନିବାରଣ,

ଉନ୍ନତ ଧରଣର ଗୋପାଳନ, ମୌଳିକ ଶିକ୍ଷା ପ୍ରଚଳନ ଭଳି ଟାଣୁଆ କାମରେ ବରୀ ଅଞ୍ଚଳ ବେଶ୍ ଆଗୁଆ ଥିଲା । ବର୍ଷକୁ ବର୍ଷ ବନ୍ୟାର ପ୍ରକୋପ ଯୋଗେ ଲୋକମାନେ ଯେତେ ଅଭାବ ଅସୁବିଧାର ସମ୍ମୁଖୀନ ହୋଇଥିଲେ ହେଁ ପାଗ ଶୁଖିଲା ହେବାମାତ୍ରେ ନିଜ ନିଜ ଧନ୍ଦାରେ ଲାଗି ପଡୁଥିଲେ ।

ପୂର୍ବରୁ ବରୀ ଅଞ୍ଚଳର ଚାଷୀମାନଙ୍କୁ ଟମାଟୋ, ଚିନାବାଦାମ୍ ଫୁଲକୋବି, ବନ୍ଧାକୋବି, ଆଳୁ ପରି ଫସଲ ଫଳେଇ ସେବାଘରର କର୍ମୀମାନେ ଆଖପାଖର ଚାଷୀମାନଙ୍କୁ ସବୁ ଫସଲ ପାଇଁ ଉତ୍ସାହିତ କଲେ ।

ନୂଆ ଫସଲକୁ ସ୍ଥାନୀୟ ଲୋକେ ବ୍ୟାପକ ଭାବରେ ହଠାତ୍ ଗ୍ରହଣ କଲେ ନାହିଁ । ମାତ୍ର କାଳକ୍ରମେ ବରୀ ଅଞ୍ଚଳ ଏସବୁ ଫସଲ ଉତ୍ପାଦନ ଲାଗି ବେଶ୍ ଖ୍ୟାତି ଅର୍ଜନ କଲା । ଭୂଦାନ ଆନ୍ଦୋଳନର ଚାଳକ ବିନୋବାଜୀ କହିଥିଲେ, ''ଗୋପବାବୁଙ୍କ ସ୍ମୃତିରକ୍ଷା କରାଯାଇ ପାରିବ, ଓଡ଼ିଶାରେ ଘରେ ଘରେ ସର୍ବୋଦୟ ପାତ୍ର ବସିଲେ ।''

ସେଦିନର ସନ୍ଧ୍ୟାବେଳେ ଯେଉଁ ପ୍ରାର୍ଥନା ସଭା ହେଲା, ଆଚାର୍ଯ୍ୟ ମହାଶୟ ସେଠା ଲୋକଙ୍କୁ ଏଇକଥା ମନେ ପକେଇ ଦେଲେ ।

ପଦଯାତ୍ରାର ପ୍ରତ୍ୟେକଟି ଦିନ ବିଶେଷତ୍ୱରେ ଭରା । ସବୁଦିନର ବର୍ଣ୍ଣନା କରିବାତ ସହଜ ନୁହେଁ କି ସୁବିଧାଜନକ ନୁହେଁ । ତେବେ... ମଧୁସାଗର ସ୍କୁଲ କଥା ନ କହିଲେ ଅନେକ କଥା ବାକି ରହିଯିବ ।

ଅନେକେ କହନ୍ତି ପାଠପଢ଼ିବାକୁ ହେଲେ ଟିକେ ଖୋଲାମନ ଦରକାର । କାମକଲେ ପାଠପଢ଼ା ମାନ୍ଦେଇ ଯିବ । କିନ୍ତୁ ମଧୁସାଗରରେ ଶ୍ରୀ ଚିନ୍ତାମଣି ସ୍ୱାଇଁ ତାଙ୍କର ସାଥୀମାନଙ୍କୁ ନେଇ ଯେଉଁ ବିଦ୍ୟାଳୟ ଠିଆ କରାଇଛନ୍ତି—ସେଠାରେ ପିଲାମାନେ ରୀତିମତ ଖଟନ୍ତି, ପାଠ ବି ପଢ଼ନ୍ତି । ସାଧାରଣ ଗାଉଁଲୀ ଲୋକ ଯେଉଁ କାମ କରେ ସେଠା ପିଲାଏ ଓ ଶିକ୍ଷକମାନେ ବି ସେହି କାମ କରନ୍ତି । ହେଲେ ସେଠାରେ ଯେ କାହାରି ବୁଦ୍ଧି କମ୍- ଏକଥା କହିଲେ ଭୁଲ ହେବ । କେନ୍ଦ୍ରାପଡ଼ା ସହର ପର୍ଯ୍ୟନ୍ତ ସେଠାପିଲାଏ ପାଛୋଟି ନେବାକୁ ଆସିଥିଲେ ।

ମଧୁସାଗରର ସୁରେଶ ଭାଇ ଜଣେ ଭଲ ଗାୟକ । ନିଜ ଲେଖା ଗୀତକୁ ଖୁବ୍ ଚମତ୍କାର ଭାବେ ସେ ଗାଇପାରନ୍ତି । ସେଦିନର ପଦଯାତ୍ରା ଭୁଲିବାର ନୁହେଁ । ପଦଯାତ୍ରା ପ୍ରାୟ ୭ ମାଇଲ ତ କେବଳ ସଙ୍ଗୀତର ମୂର୍ଚ୍ଛନା ଭିତରେ କଟିଗଲା ।

'ଶାନ୍ତି ମୁକ୍ତି ସର୍ବୋଦୟ' ଗୀତଟି ଆଚାର୍ଯ୍ୟ ମହାଶୟଙ୍କୁ ଖୁବ୍ ଭଲ ଲାଗିଲା । ମଧୁସାଗରରୁ ମାର୍ଶାଘାଇ ଆସିଲା ଦିନ ବାଟରେ ଝୁପୁଝୁପୁ ବର୍ଷା ହେଲା । ଆଚାର୍ଯ୍ୟ ମହାଶୟ ଛତା ଧରନ୍ତି ନାହିଁ । ଦେହରେ ଘୋଡ଼ି ହୋଇଥିବା ଚାଦରରୁ କାନିଏ ମୁଣ୍ଡରେ ପକେଇ ସେ ଚାଲିଥାଆନ୍ତି । ପଛରେ ଥାଆନ୍ତି ମଧୁସାଗରର 'ବାନରସେନା' ।

ଗୀତ ବୋଲା ଚାଲିଥାଏ । ଖାଲି ଗୀତ ନୁହେଁ, ସେଦିନର ପରିବେଶ ତାଙ୍କ ମନକୁ ଏପରିଭାବେ ମୁଗ୍ଧ କରି ନେଇଥିଲା ଯେ, ପଦଯାତ୍ରାରେ କୌଣସି ଦିନ ବି ସେ ଏଇ ଗୀତଟିକୁ

ଭୁଲିପାରିଲେ ନାହିଁ । ଦକ୍ଷିଣା ପବନକୁ ଦାସେ ଆପଣେ ଦିନେ କହିଥିଲେ, ''ଆଲିଙ୍ଗନ ଆଶେ ତବ ପଥ ପାଶେ ଚିଲିକା ଆବେଗେ ଥିବ ଅନାଇ ।'' ସେହିଭଳି ତେଣେ କଟକ ସହରର ଲୋକେ ପଦଯାତ୍ରୀ ଆଚାର୍ଯ୍ୟ ମହାଶୟଙ୍କୁ ଅଭ୍ୟର୍ଥନା କରିବାପାଇଁ ଅନାଇ ବସିଥାଆନ୍ତି ।

କଟକ ସହରରେ ପାଦ ଦେଲାକ୍ଷଣି କେତେ ରକମର ଲୋକେ ତାଙ୍କୁ ସ୍ୱାଗତ ଜଣାଇଲେ । ସାତଦିନ ଧରି ସେ ସହରର ବିଭିନ୍ନ ସାହିରେ ବୁଲିଲେ । ବିଭିନ୍ନ ସ୍କୁଲ, ପାଠାଗାର, ସାଧାରଣ ଅନୁଷ୍ଠାନରେ ଆପଣାର ବାଣୀ ଶୁଣାଇଲେ- ଅନୁଭବ ବୟାନ କଲେ । ଗୋପବାବୁଙ୍କ ତିରୋଧାନ ପରେ ମନେ ହେଉଥିଲା ଭୂଦାନ ଆନ୍ଦୋଳନ ଓଡ଼ିଶାରେ ଦବିଯିବ । ମାତ୍ର ଆଚାର୍ଯ୍ୟ ମହାଶୟଙ୍କର ଏଇ ଭୀଷ୍ମ ପ୍ରତିଜ୍ଞା ବଳରେ ସେ ଦୁଃସ୍ୱପ୍ନ ଉଭେଇଗଲା । କଟକରୁ ସେ ଚାଲିଲେ ଢେଙ୍କାନାଳ- ଯୁଆଡ଼େ ବୀର ବାଜୀ ରାଉତର ଗାଁ ।

## (୪୭)

ମାସେ ପାଞ୍ଚଦିନକାଳ ଢେଙ୍କାନାଳର ବିଭିନ୍ନ ସ୍ଥାନରେ ଆଚାର୍ଯ୍ୟ ମହାଶୟ ବୁଲିଲେ । ତା' ପରେ ସାତକୋଶିଆ ଗଣ୍ଡ ବାଟ ଦେଇ ଟିକରପଡ଼ାରୁ ସେ ଆସିଲେ ଦଶପଲ୍ଲାର ଗଣିଆ । ସର୍ବୋଦୟର ବାର୍ତ୍ତାବହ ଆଚାର୍ଯ୍ୟ ହରିହରଙ୍କୁ ଅଭ୍ୟର୍ଥନା କରିବା ଲାଗି ସେଦିନ ନଈକୂଳେ ଦିନ ବାରଟାରୁ ସଞ୍ଜଯାଏ ସହସ୍ରାଧିକ ଲୋକ ଜମା ହୋଇଥାଆନ୍ତି ।

ପୁରୀ, ଗଞ୍ଜାମ, କୋରାପୁଟ ପରେ ପଡ଼ିଲା କଳାହାଣ୍ଡି । ସେଦିନ ଅକ୍ଟୋବର ମାସର ବାର ତାରିଖ । ଉକ୍ଳା (ଉତ୍‌କଲୋ) ନିମ୍ନ ମାଧମିକ ଗାଁର ସ୍କୁଲରେ ଆଚାର୍ଯ୍ୟ ମହାଶୟ ଆସ୍ଥାନ ଜମେଇ ଥାଆନ୍ତି । ମୁଖ୍ୟମନ୍ତ୍ରୀ ଡ: ହରେକୃଷ୍ଣ ମହତାବ ସେଦିନ ଭବାନୀପାଟଣା ଯାଉଥାଆନ୍ତି । ଶୁଣିଲେ ଯେ ଆଚାର୍ଯ୍ୟ ମହାଶୟ ଭବାନୀପାଟଣା-ଟିଟିଲାଗଡ଼ ରାସ୍ତାରେ ଚାଲି ଚାଲି ଆସୁଛନ୍ତି ।

ଦିନ ୧୧ଟା ସରିକି । ଟିକିଏ ଗଲେ ମଧ୍ୟାହ୍ନ ଭୋଜନ ହେବ । ଆଚାର୍ଯ୍ୟ ମହାଶୟ ଓ ହୋତା ମହାଶୟ ସୂତା କାଟୁଥାଆନ୍ତି । ହଠାତ୍ ଗାଡ଼ି ରୋକିବାର ଶବ୍ଦ ହେଲା । ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟ ମହାଶୟଙ୍କ ଦର୍ଶନ ପାଇଁ ଓହ୍ଲାଇଲେ ।

''ମହତାବ ବାବୁ ଆସୁଛନ୍ତି'' ଶୁଣି ଆଚାର୍ଯ୍ୟ ମହାଶୟ ଯାଉଥିଲେ ତାଙ୍କୁ ପାଛୋଟି ଆଣିବାକୁ । ପାଟି ଶୁଭିଲା, ''ଓହୋ, ଆପଣ କାହିଁକି ଆସୁଛନ୍ତି ।''

କଥା ପ୍ରସଙ୍ଗରେ, ପ୍ରଣାମ ପରେ ମହତାବ ବାବୁ କହିଲେ, ''ଆପଣମାନଙ୍କୁ ଦେଖିଲାବେଳକୁ ଆମକୁ ସବୁ ଲାଜମାଡୁଛି ।''

ପାଖରେ ଥିବା ହୋତା ମହାଶୟ କଥାଟାର ତାତ୍ପର୍ଯ୍ୟ ବୁଝିଗଲେ । ସେ କହିଲେ, ''କି, ଆପଣ କ'ଣ ବୁଢ଼ା ହୋଇଗଲେଣି କି ?'' ମହତାବ ବାବୁ ଉତ୍ତର ଦେଲେ-'' ସେଇୟା ନୁହେଁ ତ ଆଉ କ'ଣ ? ମାତ୍ର ଆଚାର୍ଯ୍ୟ ମହାଶୟଙ୍କ ଉତ୍ତର ଥିଲା, ''କିନ୍ତୁ ଆମେ ବୁଢ଼ା ହୋଇ ନାହୁଁ ।''

କଳାହାଣ୍ଡି ପଦଯାତ୍ରାବେଳେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଖୁବ୍ ବର୍ଷା ହେଲା । ତା'ପରେ ପରେ ଖବର କାଗଜରୁ ଜାଣିବାକୁ ମିଳିଲା ବନ୍ୟା ବି ହୋଇଛି । ଇସ୍ ! ଆଚାର୍ଯ୍ୟ

ମହାଶୟ କି ବ୍ୟସ୍ତ ହେଲେ ସେତେବେଳେ । ଅତୀତରେ ଯେତେ ବନ୍ୟା, ଦୁର୍ଭିକ୍ଷର ସେବା ସେ କରିଛନ୍ତି, ସେସବୁ ରୂପାୟିତ ହୋଇ ଉଠୁଥିଲା ତାଙ୍କ ମନରେ । କିନ୍ତୁ ସାରା ପ୍ରଦେଶରେ ପଦଯାତ୍ରା କରିବାର ବ୍ରତ ମନ ଭିତରେ ନେଇଥିବାରୁ, ଯେତେ ଯାହାହେଲେ ବି ସେ ତାହା ଛାଡ଼ିପାରୁ ନଥାନ୍ତି । ଧୃତରାଷ୍ଟ୍ର ପରି ଅଟଳ ରହିଥାଆନ୍ତି ।

କଳାହାଣ୍ଡିପରେ ବଲାଙ୍ଗୀର ଜିଲ୍ଲା ପାର ହୋଇ ସେ ଆସିଲେ ବୌଦ । ବୌଦ ପ୍ରବେଶର ଦିନକ ପରେ ନଭେମ୍ବର ପହିଲା (୧୯୫୯ ମସିହା) ଦିନ ଦହମୁଣ୍ଡାଠାରେ ଆଚାର୍ଯ୍ୟ ମହାଶୟ ଖୁବ୍ ଅସୁସ୍ଥ ହୋଇ ପଡ଼ିଲେ । ଦେହର ଉତ୍ତାପ ଖୁବ୍ ବଢ଼ିଗଲା । ଦିନଭରି ପ୍ରଳାପ ଚାଲିଲା । ଖାଇବା ବନ୍ଦ ହୋଇଗଲା । ପରଦିନଠୁଁ ପଦଯାତ୍ରା କରିବା କଥା କେହି ତ ଭାବୁ ନଥିଲେ । ମାତ୍ର ସମସ୍ତେ ଚିନ୍ତିତ ଥିଲେ ଅନ୍ତତଃ ବୌଦ ପର୍ଯ୍ୟନ୍ତ ତାଙ୍କୁ ନିଆଯାଇପାରିବ କେମିତି । ପାଖରେ ବଡ଼ ଡାକ୍ତର ଖାନା ନାହିଁ । ଦହମୁଣ୍ଡାଯାଏ ମଟର ଗାଡ଼ି ଆସିପାରିବ ନାହିଁ, କାରଣ ବାଟରେ ତିନିଚାରି ଜାଗାରେ ଛୋଟ ଛୋଟ ନାଳ ।

ଯଦି କୌଣସି ପ୍ରକାରେ ଗାଡ଼ି ଆସେ, ତାହାହେଲେ ଧକଡ଼ଚକଡ଼ରେ ଦେହ ଆହୁରି ବେଶି ଖରାପ ହେବ । କିନ୍ତୁ ବିଚରା ସ୍ଥାନୀୟ ଡାକ୍ତର ତାଙ୍କର ସାଧମତେ ସବୁପ୍ରକାର ଉଦ୍ୟମ ଚଳାଇ ଥାଆନ୍ତି ଆଚାର୍ଯ୍ୟ ମହାଶୟଙ୍କୁ ଭଲ କରିବା ପାଇଁ । କଥା ହେଲା ଯେ, ପରଦିନ କୌଣସି ପ୍ରକାରେ ଆଚାର୍ଯ୍ୟ ମହାଶୟଙ୍କୁ ବୌଦଗଡ଼କୁ ନିଆଯିବ । ଡଙ୍ଗା ବରାଦ ହେଲା । କଥା ହେଲା ସକାଳ ୭ଟାରେ ବାହାରିବା ପାଇଁ ।

ପଦଯାତ୍ରୀ ଦଳ ଶୋଇଥାଆନ୍ତି । ହଠାତ୍ ୪ଟା ପୂର୍ବରୁ ଘଣ୍ଟି ବାଜିଲା । ସମସ୍ତେ ଦେଖିଲେ ଯେ, ଆଚାର୍ଯ୍ୟ ମହାଶୟ କେତେବେଳୁ ଉଠି ନିଜ କାମରେ ଲାଗିଗଲେଣି ।

ପଦଯାତ୍ରାରେ ଯିବା କଥାତ ମୋଟେ ନଥିଲା । ଏଣୁ ସମସ୍ତେ ଡେରି ଡେରି କରୁଥାଆନ୍ତି । କଡ଼ା ସ୍ୱର ଶୁଭିଲା- ''କିରେ ଛ'ଟା ପରା ବାଜିଲା । କ'ଣ ଯିବ ନାହିଁକି ?''

ପଦଯାତ୍ରାର ପରିଚାଳକ ଶ୍ରୀ କୁଞ୍ଜବିହାରୀ ଦାସ ପଚାରିଲେ, ''ଆଜ୍ଞା, କୁଆଡ଼େ ଯିବା ?''

''ଆଜି ପରା ବାଉଁଶୁଣିରେ ପହଞ୍ଚିବା କଥା ।'' -ଆଚାର୍ଯ୍ୟ ମହାଶୟ ଉତ୍ତର ଦେଲେ ।

ସମସ୍ତେ ବୁଝେଇଲେ ଯେ, କାଲି ଆପଣ ଭାରି ଅସୁସ୍ଥ ଥିଲେ, ସକାଳୁ ଏ ଯେଉଁ ଶୀତ ଏବଂ କୁହୁଡ଼ି । ସେଥିରେ ପୁଣି ନଈକୂଳିଆ ପବନ । ଆପଣ ପଦଯାତ୍ରା କଲେ ଦେହ ଆହୁରି ବିଗିଡ଼ି ଯିବ ।''

ସେ କି କାହାକଥା ଶୁଣିବା ଲୋକ ! ମୁଣ୍ଡ ଉପରର ଚାଦର ଖଣ୍ଡିକ ଦୁଇଭାଗ କରି, ବାଡ଼ି ଧରି ସେ ଆସି ସ୍କୁଲ ଘରର ଦୁଆର ପଥର ଉପରେ ଉଭା ହେଲେଣି । ଅନ୍ୟମାନେ ବାଧ ହୋଇ ତାଙ୍କ ପିଛା ଧରିଲେ ।

ବୌଦ ପରେ ସେ ପୁଣି ଆସିଲେ ବଲାଙ୍ଗୀର । ସେଠୁଗଲେ ସମ୍ବଲପୁର । ସମ୍ବଲପୁର ଜିଲ୍ଲାର ପ୍ରାର୍ଥନା ସଭାରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ବକ୍ତୃତା ସମସ୍ତଙ୍କୁ ମୁଗ୍ଧ କରିଦିଏ । ପଣ୍ଡିତ ମିଶ୍ର ମହାଶୟ ସର୍ବୋଦୟ ବିଚାରକୁ ନାନା ଦୃଷ୍ଟିରୁ ବ୍ୟାଖ୍ୟା କରି ଦେଇଥିବାରୁ ଆଚାର୍ଯ୍ୟ ମହାଶୟଙ୍କ

କାମ ଅନେକ ପରିମାଣରେ ହାଲୁକା ହୋଇଯାଇଥାଏ । ଆହା ! ସେ ଆଜି ନାହାନ୍ତି !

(୪୮)

ପଦଯାତ୍ରାର ଶେଷ ଜିଲ୍ଲା ଥିଲା ସୁନ୍ଦରଗଡ଼ । ସେଠା ବଣ, ପାହାଡ଼ ଭିତରର ଗାଁ ଗୁଡ଼ିକରେ ମଦ କାରବାର ଖୁବ୍ ବେଶି । ଏଇ ମଦ, ଗଞ୍ଜେଇ ଦୋକାନ ଆଗରେ ସେ କେତେ ପିକେଟିଂ ନ କରିଛନ୍ତି ! ହେଲେ, ଏବେ ବି ସ୍ୱାଧୀନତାର ବାରବର୍ଷ ପରେ ମଦ ଦେଶରୁ ଯାଇନି — ଏ କଥା ତାଙ୍କୁ ବଡ଼ ବାଧେ । ଭୁବନେଶ୍ୱର ନୂଆ ରାଜଧାନୀରେ, ସାଂସ୍କୃତିକ ମିଳନ ପୀଠ ଜଗନ୍ନାଥ ଧାମ ପୁରୀରେ କିମ୍ବା ଓଡ଼ିଶାର ପ୍ରଧାନ ନଗରୀ କଟକରେ ମଦ ଦୋକାନର ବଡ଼ ବଡ଼ ବିଜ୍ଞପ୍ତି ଦେଖି ସେ ହତାଶ ହୁଅନ୍ତି । ଜୀବନର ଶେଷ ଦିନରେ ଗୋପବାବୁ କିପରି ମଦ କାରବାର ନେଇ ରୁଷ୍ଟ ହୋଇ ଉଠିଥିଲେ, ତାହା ତାଙ୍କର ମନେ ପଡ଼େ । ମଦର ଅପକାରିତା ବିଷୟରେ ସେ ବୁଝେଇ ଚାଲନ୍ତି ।

ଅଢ଼େଇହଜାର ମାଇଲରୁ ଅଧିକ ବୁଲି ଆଚାର୍ଯ୍ୟ ମହାଶୟ ଆପଣା ପଦଯାତ୍ରାର ପ୍ରଥମ ପର୍ଯ୍ୟାୟ ଶେଷ କଲେ । ସେଦିନ ଜାନୁୟାରୀ ୩୧ ତାରିଖ(୧୯୬୦ ମସିହା) । ରହଣୀ ଥାଏ ଝାରସୁଗୁଡ଼ାଠାରେ ।

ଆଗାମୀ ଫାଲ୍‌ଗୁନ ମାସରେ ଆଚାର୍ଯ୍ୟ ମହାଶୟଙ୍କ ଜନ୍ମଦିନ । ୮୨ ପୁରିଯାଇ ୮୩ ଚାଲିବ । ଏଣୁ ତାଙ୍କର ଜନ୍ମଦିନ ପାଳନ କରିବାଲାଗି କଟକ ଓ ପୁରୀର ବହୁ ଛାତ୍ର, ଏବଂ ସହକର୍ମୀଙ୍କ ମନରେ ଆଗ୍ରହ ଥାଏ । ଏଥିପାଇଁ ତାଙ୍କର ଉପସ୍ଥିତି ଦରକାର । ସେହିବର୍ଷ ସେବାଗ୍ରାମ (ଗାନ୍ଧୀଜୀଙ୍କ କର୍ମପୀଠ) ଠାରେ ଦ୍ୱାଦଶ ବାର୍ଷିକ ସର୍ବୋଦୟ ସମ୍ମିଳନୀ ହେବାର କଥା । ବିନୋବାଜୀଙ୍କର ଇଚ୍ଛା ଯେ, ଆଚାର୍ଯ୍ୟ ମହାଶୟ ଏଥିରେ ସଭାପତି ହୁଅନ୍ତୁ । ଆଗରୁ କୋରାପୁଟରେ ବୁଲିବାବେଳେ, କର୍ମୀମାନଙ୍କୁ ବିନୋବାଜୀ ଲେଖିଥିଲେ, ‘‘ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରା ଆମ ସମସ୍ତଙ୍କପାଇଁ ସ୍ଫୂର୍ତ୍ତି-ସ୍ରୋତ ଅଟେ ।’’

ମାର୍ଚ୍ଚ ମାସ ୨୬ ତାରିଖ ଦିନ ସେବାଗ୍ରାମର ଏକ ସୁଶୋଭିତ ମଣ୍ଡପରେ ସର୍ବୋଦୟ ସମ୍ମିଳନୀ ଆରମ୍ଭ ହେଲା । ଆଚାର୍ଯ୍ୟ ମହାଶୟ ହେଲେ ସଭାପତି । ଦେଶ ବିଦେଶରୁ ଆସିଥିବା କେତେ ଦର୍ଶକ, ସାମ୍ବାଦିକ, ଫଟୋଗ୍ରାଫର, ଏକାବେଳକେ କାମରେ ଲାଗିଗଲେ । ସଭାପତିଙ୍କ ରୂପ ଦେଖିବା ପାଇଁ ସମସ୍ତେ କୌତୁହଳୀ ହୋଇ ଉଠିଲେ । ଦାଢ଼ୀବାଲା ମୁହଁରୁ ସେ ଯେଉଁ ଶ୍ରଦ୍ଧାର ଝରଣା ବୋହୁଥିଲା, ତା’ର ପାବକ ସ୍ପର୍ଶ ସମସ୍ତଙ୍କୁ ଛୁଇଁଲା ।

ଜଣେ ଶିକ୍ଷକଭାବେ ସମ୍ମିଳନୀ ଉଦ୍‌ଘାଟନ କରି ସେଦିନ ସେ ଯାହା କହିଲେ — ସମସ୍ତଙ୍କର ମନ ଭିତରେ ତାହା ଏକ ତରଙ୍ଗ ସୃଷ୍ଟିକଲା । ସେ କହିଲେ ଯେ, ‘‘ପ୍ରଚଳିତ ସମାଜର ପରିବର୍ତ୍ତନ ଦରକାର । ଆଜି ତ ସମାଜରେ ଲାଞ୍ଚ ମିଛ ଆଦି ମଜ୍ଜାଗତ ହୋଇ ରହିଛି । ଏପରିକି ସ୍କୁଲରେ ଶିକ୍ଷା ଦିଆଯାଉଛି — ଯଦି ଦଶସେର ଦୁଧରେ ପାଞ୍ଚସେର ପାଣି ମିଶେଇଲେ ତିନିଟଙ୍କା ଲାଭ ହୁଏ, ତେବେ କେତେସେର ଦୁଧରେ କେତେସେର ପାଣି ମିଶେଇଲେ ବାରଟଙ୍କା ଲାଭ ହେବ ।

ଅର୍ଥାତ ଦୁଧରେ କିପରି ପାଣି ମିଶେଇ ଲୋକଙ୍କୁ ଠକାଯାଏ ଏ ବିଷୟରେ ସ୍କୁଲ୍‌ରେ ଶିକ୍ଷା ଦିଆଯାଉଛି ।''

ବହୁ ଆଲୋଚନା, ବହୁ ବକ୍ତୃତାର କାର୍ଯ୍ୟକ୍ରମ ଚାଲିଲା ତିନିଦିନ ଧରି । ସମ୍ମିଳନୀର ଉଦ୍‌ଯାପନ କରି ସେ ଆଶଙ୍କା ପ୍ରକାଶ କଲେ ଯେ, ''ବୌଦ୍ଧଧର୍ମ ଦିନେ ଏ ଦେଶରୁ ବାହାରିଥିଲା । କିନ୍ତୁ ଆଜି ତାହା ଅନ୍ୟ ଦେଶକୁ ମାଡ଼ିଗଲାଣି ଅଥଚ ଭାରତ ଭିତରେ ପ୍ରାୟ ନାହିଁ । ଠିକ୍ ଯେମିତି ବରଗଛର ମୂଳଗଛ ମରିଯିବା ପରେ ବିଭିନ୍ନ ଜାଗାରୁ ବାହାରିଥିବା ଓହଳ ସବୁ ମସ୍ତବଡ଼ ହୋଇ ଉଠନ୍ତି, ସେହିଭଳି ଗାନ୍ଧିଜୀଙ୍କ ବିଚାର ଏ ଦେଶରୁ ମୂଳପୋଛ ହୋଇ ଆଉ କେଉଁଠି ଦେଖାଦେବ କି କ'ଣ କିଏ ଜାଣେ ?''

ଆଚାର୍ଯ୍ୟ ମହାଶୟ ସଭାପତି ଆସନରୁ କହିଲେ, ''ସ୍ୱାଧୀନତା ଆସିଛି । ହେଲେ ଗାଏଁ ଗାଏଁ ତାହା ପହଞ୍ଚି ନାହିଁ । ସୂର୍ଯ୍ୟ ଆସିଗଲେଣି । ମାତ୍ର କବାଟ ବନ୍ଦ କରିଥିବାରୁ ଆମେ ତାଙ୍କୁ ପାଇନୁ ।''

ପଦଯାତ୍ରାର ଏକମାତ୍ର ଅସୁବିଧା ସୃଷ୍ଟି କରୁଥିଲା ତାଙ୍କର ଦୃଷ୍ଟିଶକ୍ତିହୀନ ଆଖି । ଆଚାର୍ଯ୍ୟ ମହାଶୟ ଚାହୁଁଥିଲେ ଯେ, ଆଖିରେ ଅସ୍ତ୍ରୋପଚାର କରି ଯଦି ତାକୁ ପୂରା କାର୍ଯ୍ୟକ୍ଷମ କରାଯାଇ ପାରନ୍ତା, ତାହା ହେଲେ ଆଉ କିଛି ଅସୁବିଧା ହୁଅନ୍ତା ନାହିଁ । କାହାରି ସାହାଯ୍ୟ ନନେଇ ମଧ ଏକାକୀ ସେ ଏ ପ୍ରଦେଶର ଗୋଟାଏ ମୁଣ୍ଡରୁ ଆରମୁଣ୍ଡ ଯାଏ ଘୁରି ବୁଲନ୍ତେ । ବନ୍ଧୁମାନେ ଅନେକ ମତ ଦେଉଥିଲେ ଅନ୍ୟ ପ୍ରକାର । ସେମାନେ ମନେକରୁଥିଲେ ବୟସ ଏତେ ହେବାପରେ ଅସ୍ତ୍ରୋପଚାର ଯନ୍ତ୍ରଣା ଆଚାର୍ଯ୍ୟ ମହାଶୟ ଭୋଗ ନକରିବା ଭଲ । କିନ୍ତୁ ସେ କ'ଣ କାହା କଥା ଶୁଣିବା ଲୋକ । ପଦଯାତ୍ରାରେ ବୁଲୁଥିଲେ ସୁଦ୍ଧା ଅସ୍ତ୍ରୋପଚାର ଯୋଜନା ସେ ମନେ ମନେ ଠିକ୍ କରୁଥାଆନ୍ତି । ସତକୁ ସତ ଥରେ ନୁହେଁ, ଦୁଇଥର ସେ ଆଖି ଅପରେସନ୍ କରାଇଲେ ।

## (୪୯)

ସେବାଗ୍ରାମର ସମ୍ମିଳନୀରୁ ଫେରି ଆଚାର୍ଯ୍ୟ ମହାଶୟ ପୁଣି ପଦଯାତ୍ରାରେ ଚାଲିଲେ । ଓଡ଼ିଶା ସାରା ଆହୁରି ତିନିବର୍ଷକାଳ ପଦଯାତ୍ରା କରି । ସମୁଦାୟ ପ୍ରଦେଶକୁ ଦୁଇଥର ପ୍ରଦକ୍ଷଣ କଲେ ।

ସତ୍ୟବାଦୀର ବନବିଦ୍ୟାଳୟର ଅଧକ୍ଷ ହେବା, ଇଞ୍ଚୁଡ଼ି ଚଟାଣରେ ଲୁଣ ମାରିବା, ବିଭିନ୍ନ ସମୟରେ ଜେଲ ଯିବା ଯେମିତି ତାଙ୍କ ଜୀବନର ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ ଠିକ୍ ସେମିତି ଓଡ଼ିଶା ସାରା ପଦଯାତ୍ରା କରିବା ଥିଲା ତାଙ୍କର ଏ ଶେଷ ଜୀବନର ତପସ୍ୟା । ସେତେବେଳକୁ ତାଙ୍କର ଦୃଷ୍ଟିଶକ୍ତି ସମ୍ପୂର୍ଣ୍ଣ ନଷ୍ଟ ହୋଇ ଯାଇଥାଏ । ଆଖିରେ ସେ ଚଷମା ଲଗାନ୍ତି । ତାହା କେବଳ ଆଖି ଭିତରକୁ ଧୂଳି ନଯିବା ପାଇଁ । ମାତ୍ର ଆଖି ଦୁଇଟିରେ ପରଳ ମାଡ଼ିଲା ପରେ ତାକୁ ଦୁଇଥର ଅପରେସନ୍ କଲେ । କିନ୍ତୁ କିଛି ଫଳ ହେଲା ନାହିଁ । ଏବେ ଦୃଷ୍ଟି ଶକ୍ତି ହରାଇଲା ପରେ ବିଲହିଡ଼ କିମ୍ବା ପାହାଡ଼ ରାସ୍ତାରେ ଚାଲିବା ଲାଗି ସେ ପଦଯାତ୍ରୀ ଦଳରେ ଥିବା ଜଣେ କର୍ମୀଙ୍କକାନ୍ଧରେ ଭରା ଦେଇ ଚାଲନ୍ତି । ବେଳେବେଳେ ଅଣ ଓସାରିଆ ବଣୁଆ ରାସ୍ତାରେ ଗଲାବେଳେ ଝୁଣ୍ଟି ପଡ଼ନ୍ତି ।

ମାତ୍ର ସହଯାତ୍ରୀମାନେ ପ୍ରାଣପଣେ ଚେଷ୍ଟା କରନ୍ତି ଆଚାର୍ଯ୍ୟ ମହାଶୟଙ୍କୁ ନିରାପଦ ରଖିବା ଲାଗି ।

ପଦଯାତ୍ରୀ ଦଳ ଯେଉଁ ଗାଁରେ ପହଚନ୍ତି ସେ ଗାଁଆରେ ପଦଯାତ୍ରୀ ଦଳଙ୍କୁ ଉଚ୍ଛସିତ ସମ୍ବର୍ଦ୍ଧନା ହୁଏ । ଅନେକ ସମୟରେ ଗାଁ ବାଲା ଆଗନ୍ତୁକମାନଙ୍କୁ ବରଯାତ୍ରୀମାନଙ୍କ ଭୋଜି ହେଲା ପରି ଖୁବ୍ ଖୁଆନ୍ତି । ଏ ସମ୍ପର୍କରେ ପାଟକୁରା ଅଞ୍ଚଳର ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ । ବିନୋବାଜୀଙ୍କ ପଦଯାତ୍ରକୁ ଅନୁକରଣ କରି କଂଗ୍ରେସ ଦଳ ସେ ବର୍ଷ ପଦଯାତ୍ରାର ଆୟୋଜନ କରିଥାଏ । ଆଚାର୍ଯ୍ୟ ମହାଶୟ ପାଟକୁରାରେ ପହଞ୍ଚିବାର କିଛି ଦିନ ଆଗରୁ କଂଗ୍ରେସବାଲାଙ୍କର ରହଣୀ ସେଠାରେ ପଡ଼ିଥାଏ । ଗାଁ ଲୋକେ ଆଗନ୍ତୁକ କଂଗ୍ରେସ ଦଳର ପଦଯାତ୍ରୀମାନଙ୍କ ଲାଗି ଛେଳିଟିଏ ମାରି ଭୋଜୀଭାତ କରିଥାଆନ୍ତି । ସର୍ବୋଦୟ କର୍ମୀ ଓ କଂଗ୍ରେସ କର୍ମୀ ଉଭୟେ ଖଦଡ଼ ଲୁଗା ପିନ୍ଧୁଥିବାରୁ ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରୀ ଦଳକୁ ଦେଖି ସ୍ଥାନୀୟ ସ୍କୁଲ ଶିକ୍ଷକଙ୍କର ଭାଳେଣୀ ପଡ଼ିଲା । କାରଣ ସ୍କୁଲ ଘରେହିଁ ପଦଯାତ୍ରୀଦଳ ରହିବା କଥା । ତାଙ୍କର ଚିନ୍ତା ପଡ଼ିଲା-''ପୁଣି ଗୋଟାଏ ଛେଳି କେଉଁଠୁ ଆସିବ ?''

''ପଦଯାତ୍ରାରେ ଆମିଷ ଚଳେ ନାହିଁ''- ଶୁଣି ଶିକ୍ଷକ ମହାଶୟ ଆଶ୍ୱସ୍ତ ହେଲେ । ସ୍ୱଚ୍ଛଳ ଗାଁମାନଙ୍କରେ ଭାତ, ଡାଲି, ତରକାରୀ, ଖଟା, ଭଜା ସାଙ୍ଗକୁ କ୍ଷୀରି ମଧ୍ୟ ପରିବେଷିତ ହୁଏ । କୌଣସି କୌଣସି ସମୃଦ୍ଧ ଗାଁରେ ତ ପୁରୀ, କାନିକା ସାଙ୍ଗକୁ କେତେ ରକମର ମିଠା ପଦଯାତ୍ରୀ ଦଳଙ୍କୁ ମିଳିଥାଏ । ଏସବୁ ସରସିଆ ଖାଦ୍ୟ ସିନା ଅନ୍ୟମାନେ ବେଶ୍ ହଜମ କରିଦେବେ । ହେଲେ ଅଶି ବରଷର ଧୂଡୁକା ପେଟରେ ଏସବୁ ସରସିଆ ଖାଦ୍ୟ ଆଚାର୍ଯ୍ୟ ମହାଶୟ ହଜମ କରିପାରନ୍ତି ନାହିଁ । ପଦଯାତ୍ରୀମାନଙ୍କ ପାଇଁ ଯେତେ ରକମର ଖାଦ୍ୟ ପ୍ରସ୍ତୁତ ହୋଇ ଥାଉ ନା କାହିଁକି ତାଙ୍କ ପାଇଁ ସବୁଦିନେ ଅରୁଆ ଭାତ, ଡାଲି, ଶାଗ ଏବଂ ପୁଳାଏ କଞ୍ଚାଲଙ୍କା । ତା'ଛଡ଼ା ନିତି ଦିନିଆ ଭୋଜୀଭାତର ଆୟୋଜନରେ ଖାଇବାର ସମୟ ଠିକ୍ ରହେନା । ସେଥିପାଇଁ କସ୍ତୁରବା ଟ୍ରଷ୍ଟ ବା ନବଜୀବନ ମଣ୍ଡଳର ମହିଳା କର୍ମୀମାନଙ୍କ ଭିତରୁ ମାଳତୀ ବିଶ୍ୱାଳ, ଅନ୍ନପୂର୍ଣ୍ଣା ସାମନ୍ତରାୟ, ସାବିତ୍ରୀ ଗମାଙ୍ଗ, ରୁକ୍ମିଣୀ ମହାନ୍ତି, ଶଶିରେଖା ସିଂ, ରାଧାମଣି ସାହୁ ଓ ପାର୍ବତୀ ଦାସ ପଦଯାତ୍ରାରେ ଆଚାର୍ଯ୍ୟ ମହାଶୟଙ୍କର ଖିଆପିଆର ଖବର ବୁଝନ୍ତି । ସନ୍ଧ୍ୟାବେଳେ ସଭା ହୁଏ । ସଭାକୁ ଯିବା ଆଗରୁ ସେ ଟିକିଏ ଚାହା ପିଅନ୍ତି । ସଭାରୁ ଫେରିଲା ବେଳକୁ ଅନେକ ସମୟ ହୋଇ ଯାଇଥାଏ । ପୁଣି ଚିହ୍ନା ପରିଚୟର ଲୋକମାନେ ଆସି ଗପସପ ଜମାନ୍ତି । ଏତିକି ବେଳକୁ ତାଙ୍କ ପାଇଁ ଅଧ ଗିଲାସେ କ୍ଷୀର ଆସେ । ସେତକ ପିଇ ଦେଇ ସେ ବିଛଣା ଧରନ୍ତି ।

ରହଣୀ ଯାଗାରେ ପୋଖତ କର୍ମୀମାନଙ୍କ ଭିତରୁ ରାମଚନ୍ଦ୍ର ମିଶ୍ର, ପଦ୍ମନାଭ ରାୟ, ବିଶ୍ୱନାଥ ପଟ୍ଟନାୟକ, ବିଶ୍ୱନାଥ ପରିଡ଼ାଙ୍କ ପରି ଲୋକେ ଆଚାର୍ଯ୍ୟ ମହାଶୟଙ୍କଠାରୁ ଅଳ୍ପ ଦୂରରେ ନିଜ ନିଜର ମଶାରୀ ଟାଣି ଶୋଇଥାଆନ୍ତି । ରାତି ପାହିବା ବେଳେ ବିଛଣାରୁ ଉଠିବାର ଅଭ୍ୟାସ ତ ସେମାନଙ୍କର ଥାଏ । ଏଣୁ ଆଚାର୍ଯ୍ୟ ମହାଶୟଙ୍କ ସହିତ ସେମାନେ ବି ସେତିକି ବେଳକୁ ବିଛଣା ଛାଡ଼ନ୍ତି । ସେମାନେ ଆଚାର୍ଯ୍ୟ ମହାଶୟଙ୍କୁ ଶୌଚାଳୟକୁ ଯିବାରେ ସାହାଯ୍ୟ କରନ୍ତି ।

ନତ୍ୟକର୍ମ ଶେଷ କରି ଆଚାର୍ଯ୍ୟ ମହାଶୟ ରାତି ନ ପାହୁଣୁ ଗାଧୋଇ ପଡ଼ନ୍ତି । ପୂର୍ବ ରାତିରୁ ତାଙ୍କ ପାଇଁ ପାଣି ରଖାଯାଇଥାଏ ମାଠିଆରେ ନ ହେଲେ ମାଟି କୁଣ୍ଡରେ । ଶୀତ ଯେତେ ପଡ଼ିଥାଉ ନା କାହିଁକି ଓ ପାଣି ଯେତେ ଥଣ୍ଡା ହୋଇ ଥାଉନା କାହିଁକି ଆଚାର୍ଯ୍ୟ ମହାଶୟଙ୍କର ପ୍ରାତଃ ସ୍ନାନ ବନ୍ଦ ହୁଏନା । ଯଦି ଈଶ୍ୱରଲାଲ ବ୍ୟାସ କିମ୍ବା ପଣ୍ଡିତ କୃପାସିନ୍ଧୁ ହୋତା ପଦଯାତ୍ରୀ ଦଳରେ ଥା'ନ୍ତି ତେବେ ସେମାନେ ମଧ୍ୟ ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ କରନ୍ତି । ଗାଧୋଇସାରି ଆଚାର୍ଯ୍ୟ ମହାଶୟ ଗୀତା ଓ ଉପନିଷଦରୁ କିଛି ଆବୃତ୍ତି କରନ୍ତି । ମାତ୍ର ଶଙ୍କରାଚାର୍ଯ୍ୟଙ୍କ ମୋହ ମୁଦ୍‌ଗର କିମ୍ବା ଭଗବଦ୍‌ଗୀତାର ଶ୍ଳୋକଗୁଡ଼ାକ ଆଉ ସେତେ ପରିମାଣରେ ତାଙ୍କର ମନେ ନ ଥାଏ । ଯେତିକି ମନେ ପଡ଼େ ସେତିକିକୁ ସେ ନିଜର କ୍ଷୀଣ ସ୍ୱରରେ ବୋଲୁଥାନ୍ତି । ସେ ନିଜ ସାଙ୍ଗରେ ସବୁ ଦନେ ତମ୍ବାର ଏକ ପାତ୍ର ରଖିଥାଆନ୍ତି । ତା'ସାଙ୍ଗକୁ ଖିଏ କି ଦୁଇଖିଅ କୁଟା ମଧ୍ୟ ଥାଏ । ପାତ୍ରରେ ପାଣି ନେଇ ସେ ଆଚମନ କରନ୍ତି ପ୍ରାତଃ କାଳରେ ।

ପୁରୀର ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ବି ଆଚାର୍ଯ୍ୟ ହରିହର ଦାସ ପଇତା ଛାଡ଼ି ଥିଲେ ହରିଜନ ଆନ୍ଦୋଳନରେ ଭାଗ ନେବାଦିନରୁ । ମାତ୍ର ପରିଚିତ ସାଂସ୍କୃତିକ ଆଦବ କାଇଦାକୁ ସେ କେବେ ଭୁଲି ପାରି ନ ଥାନ୍ତି । ଝଙ୍କଡ଼ର ଶାରଳା, ବାଙ୍କିର ଚର୍ଚ୍ଚିକା, କଟକର ଚଣ୍ଡୀ କିମ୍ବା ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ବାଟ ଦେଇ ପଦଯାତ୍ରା କଲାବେଳେ ସେ ଅଟକି ଯାଇ ଠାକୁର, ଠାକୁରାଣୀଙ୍କୁ ମୁଣ୍ଡିଆ ମାରିବା ଦେଖାଯାଏନା । ''ଆତ୍ମାରେ ଆତ୍ମାକୁ ଦେଖ'' କଥାଟା ତାଙ୍କର ଅସ୍ଥିମଜ୍ଜାଗତ । ଏଣୁ ଦେବାଦେବୀଙ୍କୁ ମୁଣ୍ଡିଆ ମାରି ମାନସିକ କରିବା ତାଙ୍କ ପକ୍ଷରେ ଆବଶ୍ୟକ ନଥିଲା । ''ସର୍ବେ ଭବନ୍ତୁ ସୁଖୀନଃ'' ଥିଲା ତାଙ୍କର କାମ୍ୟ । ଏହି ସମ୍ପର୍କରେ ଏକ କଥା ଉଲ୍ଲେଖଯୋଗ୍ୟ ଯେ ଜଣେ ତରୁଣ କର୍ମୀ କାକଟପୁରଠାରେ ରହଣୀ ଥିବା ବେଳେ ସ୍ଥାନୀୟ ମଙ୍ଗଳା ପୀଠକୁ ଦର୍ଶନ ପାଇଁ ଗଲେ । ସେଠାରୁ ଫେରିଲା ପରେ ସେ ଆଚାର୍ଯ୍ୟ ମହାଶୟଙ୍କୁ ସଭାକୁ ନେବାକଥା । ''କ'ଣ ମଙ୍ଗଳା ଦେଖିଲୁ କି ?'' ଆଚାର୍ଯ୍ୟ ମହାଶୟ ପଚାରିଲେ କର୍ମୀଜଣକ ହଁ କି ନା କହିବା ଆଗରୁ ଆଚାର୍ଯ୍ୟ ମହାଶୟଙ୍କ ତୁଣ୍ଡରୁ ବାହାରିପଡ଼ଲା —

''ଶଙ୍କଟ ତାରିଣୀ ଝଙ୍କଡ଼ ଦେବୀ ସିଂହ ଶାରଳା
ଉଲ୍ଲୁକ ବିକଟ କାକଟପୁର ମହା ମଙ୍ଗଳା ॥''

''ଇଏ କାହାର ଲେଖା ଜାଣିଛୁ ? ରାଧାନାଥ ରାୟଙ୍କର । ଚନ୍ଦ୍ରଭାଗାରେ'' ବୋଲି ସେ ଆପେ ଆପେ କହିଉଠିଲେ ।

ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରାଟି ଅତୁଲ୍ୟ, ପ୍ରଭାକର, ଧର୍ମାନନ୍ଦଙ୍କ ପରି ଅଳ୍ପ ବୟସ୍କ ପିଲାମାନଙ୍କ ପାଇଁ ଥିଲା ଏକ ଚଳନ୍ତା ବିଶ୍ୱବିଦ୍ୟାଳୟ । ଅଧ୍ୟାପକ ରାଜକିଶୋର ମିଶ୍ର, ମଦନ ମୋହନ ସାହୁ, ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ ପ୍ରମୁଖ ନିୟମିତ ଭାବରେ 'ପଦଯାତ୍ରାରେ ଯୋଗ ଦେଉଥିଲେ । ଦେଶ ବିଦେଶର ଘଟଣାକୁ ଏକଦମ୍ ସରଳ ଭାବରେ ଘଣ୍ଟା ଘଣ୍ଟା ଧରି ବୁଝେଇବାର ଅଭ୍ୟାସ ଥିଲା ନବବାବୁଙ୍କର । ବହୁତ ପୁରୁଣା କଥାକୁ ମନେ ପକାଇ

ଚାଲିଲାବେଳେ ଆଚାର୍ଯ୍ୟ ମହାଶୟଙ୍କୁ ସେ ଖୁବ୍ ହସାଉଥିଲେ ।

ଚାଲିଲାବେଳେ ତରୁଣ କର୍ମୀମାନଙ୍କୁ ଆଚାର୍ଯ୍ୟ ମହାଶୟ ଉତ୍ସାହିତ କରୁଥିଲେ ଯେ ସେମାନେ ଚାଲିବା ସମୟଟାକୁ ବି ବଛା ବଛା ଗୀତ ସବୁକୁ ବାରମ୍ବାର ଗାଇ ତାକୁ କଣ୍ଠସ୍ଥ କରନ୍ତୁ । ଚାଲିବାବେଳେ ଗୋପବନ୍ଧୁଙ୍କର ବନ୍ଦୀର ଆତ୍ମକଥାର ଆବୃତ୍ତି ପ୍ରାୟ ସବୁଦିନ ବାଟରେ ହେଉଥିଲା । ପୁରୁଣା ପରିଚିତ କର୍ମୀ ବିଶ୍ୱନାଥ ପରିଡ଼ା ପଦଯାତ୍ରାରେ ପହଞ୍ଚି ଗଲେ ବନ୍ଦୀର ଆତ୍ମକଥା ବହିଟା ଖୋଲିବା ଦରକାର ପଡ଼େନା । ସମଗ୍ର କାବ୍ୟଟା ସତେ ଯେମିତି ତାଙ୍କର କଣ୍ଠସ୍ଥ ହୋଇ ରହିଥିଲା ।

ପଦଯାତ୍ରାରେ ବିନୋବାଜୀ ଓ ତାଙ୍କ ପାଖଲୋକେ ଶଙ୍କରାଚାର୍ଯ୍ୟଙ୍କ ଅଚ୍ୟୁତାଷ୍ଟକ ଆବୃତ୍ତି କରୁଥିବାରୁ ଆଚାର୍ଯ୍ୟ ମହାଶୟଙ୍କ ସାଙ୍ଗରେ ଥିବା କର୍ମୀମାନଙ୍କ ଭିତରୁ କେତେକ ଅଚ୍ୟୁତାଷ୍ଟକ ଆବୃତ୍ତି କରିବାରେ ଲାଗିଲେ । ବହୁବର୍ଷ ତଳେ ତାହା ଆଚାର୍ଯ୍ୟ ମହାଶୟଙ୍କର କଣ୍ଠସ୍ଥ ଥିଲା । ଏବେ ଆଉ ତାହା ମନେ ପଡୁ ନଥାଏ । ପୁଣି ପଢ଼ିବାର ଶକ୍ତି ନଥାଏ । ଅନ୍ୟମାନଙ୍କଠାରୁ ଶୁଣିଶୁଣି ସେ ଶ୍ଳୋକଗୁଡ଼ାକ ମୁଖସ୍ତ କରିବାକୁ ଚେଷ୍ଟା କରନ୍ତି । ''ବିଦ୍ୟୁଦ୍ୟୁତ ଜ୍ୟୋତିବାନ୍'' ଭଳି କଠିନ ଶବ୍ଦଗୁଡ଼ାକ ତାଙ୍କ ପାକୁଆ ପାଟିରେ ଠିକ୍ ଭାବରେ ଉଚ୍ଚାରଣ କରିହୁଏନା । ପଦଯାତ୍ରରେ ଚାଲିଥିବା କର୍ମୀମାନଙ୍କୁ ସେ ଆବୃତ୍ତି କରିବାକୁ କହନ୍ତି ଓ ତାଙ୍କ ସାଙ୍ଗରେ ବୋଲିବା ଆରମ୍ଭ କରନ୍ତି ।

କିଛି ଦିନପରେ, ସେ ନିଜେ ଶ୍ଳୋକଗୁଡ଼ାକ ମୁଖସ୍ତ କରିବାର ଆଗ୍ରହ ଛାଡ଼ି ଦେଲେ ।

ପଶ୍ଚିମ ଓଡ଼ିଶାରେ ବହୁ ସଂଖ୍ୟକ ମହିଳା ସଭାରେ କଥା ଶୁଣିବାକୁ ଆସୁଥିଲେ । ପଣ୍ଡିତ କୃପାସିନ୍ଧୁ ହୋତା ସେମାନଙ୍କର ସଭାରେ ଯୋଗ ଦେବାଟାକୁ ସେମାନଙ୍କର ବୀରତ୍ୱର ବରିଚୟ ବୋଲି କହୁଥିଲେ । ପ୍ରତି ସଭାରେ ତାଙ୍କ ତୁଣ୍ଡରୁ ବାହାରୁଥିଲା-''ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା'' । କୋରାପୁଟ ଏବଂ ଗଂଜାମର ମାଳ ଅଞ୍ଚଳରେ ସଭାଗୁଡ଼ିକ ଦିନ ଥାଉଁ ଥାଉଁ ସରି ଯାଉଥିଲା । କାରଣ ରାତିରେ ଜଂଗଲ ଭିତରେ ଗଲେ ଭାଲୁ ଏବଂ ସାପର ହାବୁଡ଼ରେ ପଡ଼ିବାକୁ ହୋଇପାରେ । କାଁ ଭାଁ ବାଘ ବି ଥାଇପାରେ । ଏଣୁ ସଭା ହୁଏ ଦିନ ଗୋଟାଏ କି ଦୁଇଟା ବେଳକୁ । ସଭାଟା ହାଟ ଦିନରେ ହେଲେ ଅନେକ ଲୋକ ଯୁଟନ୍ତି । ସଭା ଶୁଣିବା ପରେ ହାଟରୁ ସଉଦା କରି ଦୂର ଦୂରାନ୍ତରୁ ଆଦିବାସୀ ଗାଁରୁ ଆସିଥିବା ଭାଇଭଉଣୀମାନେ ନିଜ ନିଜ ଗାଁକୁ ଫେରନ୍ତି ।

ଅନେକ ଆଦିବାସୀ ଗାଁରେ ଲୋକେତ ନିଜେ ଭଲକରି ମୁଠିଏ ଖାଇବାକୁ ପାଆନ୍ତି ନାହିଁ । ଏଣୁ ପଦଯାତ୍ରାରେ ଆସିଥିବା ଆଗନ୍ତୁକମାନଙ୍କୁ ଅନ୍ୟ ସମୃଦ୍ଧି ଗାଁମାନଙ୍କ ପରି ନଅ ତରାକାରୀ ଛ' ଭଜା କରି ଖାଇବାକୁ ଦେବାକୁ ସେମାନଙ୍କର ଯୁ ଅଛି ଅବା କେଉଁଠି ? ମାଲକାନଗିରି, ଚନ୍ଦ୍ରପୁର, ଜି.ଉଦୟଗିରି, ଗୋନାସିକା ଅଞ୍ଚଳରେ ଆଦିବାସୀ ଗାଁର ଲୋକମାନେ ଶୁଖିଲା ତେନ୍ତୁଳି ମଞ୍ଜି, ଆମ୍ବଟାକୁଆ ଖାଇ ପେଟ ଭରନ୍ତି । ମାଣ୍ଡିଆ ଏବଂ ଚିନାଧାନର ଜାଉ ଖାଆନ୍ତି । ଏଇ ଜାଉକୁ ସେମାନେ କହନ୍ତି ପେଜ । ଏହା ଦେଖିବାକୁ ଏକଦମ୍ ପଳତା ପରି ।

ଆଦିବାସୀ ଅଞ୍ଚଳରେ ପଦଯାତ୍ରା ଚାଲୁଥିଲେ ବିଶ୍ୱନାଥ ପଟ୍ଟନାୟକଙ୍କୁ ନିଶ୍ଚିତ ଭାବରେ ପଦଯାତ୍ରାରେ ଦେଖିବାକୁ ମିଳେ । ୧୯୩୦ରୁ ବିଭିନ୍ନ କ୍ଷେତ୍ରରେ ସେ ଆଚାର୍ଯ୍ୟ ମହାଶୟଙ୍କ ଅନୁଗତ

ଭାବରେ କାର୍ଯ୍ୟ କରି ଆସିଛନ୍ତି । ବରୀର ସେବାଘରେ ତାଲୀମ ପାଇ ସେ କୁଜେନ୍ଦ୍ରୀଠାରେ ନିଜର ଆଶ୍ରମ କରି ଗଠନ ମୂଳକ କାର୍ଯ୍ୟର ପ୍ରୟୋଗ କରୁଥିଲେ । ଏକଦା ରାୟଗଡ଼ା, ଗୁଣପୁର, ଚନ୍ଦ୍ରପୁର ପରି ଆଦିବାସୀ ବହୁଳ ଅଞ୍ଚଳରେ ଭୂମିହୀନ ଆଦିବାସୀମାନଙ୍କୁ ଭୂମିଦେବାପାଇଁ ଭୂସତ୍ୟାଗ୍ରହ ଚଳେଇବାର ସ୍ୱପ୍ନ ତାଙ୍କର ଥିଲା । ମାତ୍ର ଭୂଦାନ ଆନ୍ଦୋଳନ ଆରମ୍ଭ ହେବାପରେ ଏବେ ସେ ସେ କାମରେ ପ୍ରାଣପଣେ ଲାଗିଥିଲେ । ତାଙ୍କ ଉଦ୍ୟମରେ କୋରାପୁଟ ଓ ଗଞ୍ଜାମର ଆଦିବାସୀ ବହୁଳ ଅଞ୍ଚଳରେ ବହୁ ସଂଖ୍ୟକ ଗ୍ରାମର ଲୋକେ ନିଜନିଜର ଜମି ଉପରୁ ମାଲିକାନା ଛାଡ଼ି ଦେଇଥିଲେ ଯାହାକୁ କି ଗ୍ରାମଦାନ ବୋଲି କୁହାଯାଉଥିଲା ।

ବିଶ୍ୱନାଥ ପଟ୍ଟନାୟକଙ୍କୁ ସ୍ଥାନୀୟ ଲୋକେ ଆଜ୍ଞା ବୋଲି ଡାକନ୍ତି । ଏଇ ଆଜ୍ଞା ପଦଟା କେମିତି ତାଙ୍କଠାରେ ସବୁଦିନ ପାଇଁ ଲାଗିଯାଇଛି । ବତ୍ସଳତାର ସହିତ ଆଚାର୍ଯ୍ୟ ମହାଶୟ ମଧ୍ୟ ତାଙ୍କୁ ଡାକନ୍ତି ''ଆଜ୍ଞା'' ।

ଏସବୁ ଅଞ୍ଚଳରେ କଟକ, ପୁରୀ ଆଡୁ ଆସିଥିବା ପଦଯାତ୍ରୀ ଦଳ ତ ମାଣ୍ଡିଆ ପେଜ, ତେନ୍ତୁଳି ମଞ୍ଜି ଖାଇ ଚଳି ପାରିବେ ନାହିଁ । ଏଣୁ ସେମାନଙ୍କ ଲାଗି ଚାଉଳ ଓ ପରିବାପତ୍ର ଧରି ବିଶ୍ୱନାଥବାବୁ ପଦଯାତ୍ରାକୁ ଆସନ୍ତି । ଏପରିକି ଆଚାର୍ଯ୍ୟ ମହାଶୟଙ୍କ ପାଇଁ ରାନ୍ଧିବା ଲାଗି ବାସନ ମଧ୍ୟ ଧରି ଆସିବାକୁ ପଡ଼େ ।

ମାଳ ଅଞ୍ଚଳରେ ଆଦିବାସୀ ଗାଁମାନଙ୍କରେ ଭୋଜୀଭାତ ହେଲେ ଲୋକେ ବଡ଼ ବଡ଼ ମାଠିଆରେ ଯାହା କିଛି ରାନ୍ଧିବା କଥା ରାନ୍ଧନ୍ତି । ଲୋକମାନଙ୍କର ଦୁଃସହନୀୟ ଆର୍ଥିକ ଅବସ୍ଥା ଯୋଗୁଁ ସେ ଗାଁମାନଙ୍କରେ ମାଟି ହାଣ୍ଡିଟିଏ ସୁଦ୍ଧା ମିଳେନା । ମାଠିଆରେ ଗୋରୁ ମାଂସଠାରୁ ଆରମ୍ଭ କରି ହାଣ୍ଡିଆ ପର୍ଯ୍ୟନ୍ତ ସବୁ କିଛି ରନ୍ଧା ହୋଇଥାଏ । ପଦଯାତ୍ରୀ ଦଳ ଗାଁରେ ଆସି ପହଞ୍ଚିବାର ବହୁ ପୂର୍ବରୁ ବିଶ୍ୱନାଥବାବୁ ସେଠାରେ ପହଞ୍ଚି ଗାଁ ଭିତରୁ ଗୋଟିଏ ଦି'ଟା ମାଠିଆ ସଂଗ୍ରହ କରନ୍ତି ଅତି ନିପୁଣ ଭାବରେ, ଝରଣା ପାଣିରେ ମାଠିଆ ଭିତରଟିକୁ ପରିଷ୍କାର କରନ୍ତି । ପଦଯାତ୍ରୀ ଦଳଙ୍କ ପାଇଁ ରୋଷେଇ ହୁଏ ସେହି ମାଠିଆରେ । ଚାଉଳ, ଡାଲି ପରିବା- ସବୁ ଏକାଠି ସିଝାହୁଏ । ପଦଯାତ୍ରୀ ଦଳଙ୍କ ସହିତ ସ୍ଥାନୀୟ ଗ୍ରାମବାସୀଙ୍କର ମଧ୍ୟ ପତ୍ର ପଡ଼େ । ଆଚାର୍ଯ୍ୟ ମହାଶୟଙ୍କ ଆଗମନ ହେତୁ ବିଶ୍ୱନାଥ ପଟ୍ଟନାୟକ ଓ ତାଙ୍କ ସହକର୍ମୀମାନେ ଗ୍ରାମବାସୀମାନଙ୍କ ଲାଗି ଖାଇବାର ବ୍ୟବସ୍ଥା କରିଥାଆନ୍ତି ।

ଦିନେ ନବରଙ୍ଗପୁର ଅଞ୍ଚଳର ଏକ ସ୍କୁଲ ଘରେ ଆଚାର୍ଯ୍ୟ ମହାଶୟ ଓ ତାଙ୍କର ପଦଯାତ୍ରୀ ଦଳଙ୍କର ରହଣୀ ବ୍ୟବସ୍ଥା ହୋଇଥାଏ । ରାତି ଚାରିଟାରେ ଆଚାର୍ଯ୍ୟ ମହାଶୟ ସ୍ନାନ, ତର୍ପଣ ଇତ୍ୟାଦି ପାଇଁ ବାହାରିଲେ । ଲଣ୍ଠନଟିଏ ରାତି ସାରା ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । କ୍ଷୀଣ ଆଲୋକରେ ଜଣେ କର୍ମୀ ଲକ୍ଷ୍ୟ କଲେ ଯେ ସ୍କୁଲ ଘରର ବାଉଁଶ ରୁଅ ଉପରୁ ଗୋଟିଏ ଚିତି ସାପ ଓହଳିଛି । ନିମିଷକ ଭିତରେ ସାପଟା ଆସି ପଡ଼ିଲା ତଳେ ଗୋଟାଏ କମ୍ବଳ ଉପରେ । ଜଣେ କର୍ମୀ ଆଚାର୍ଯ୍ୟ ମହାଶୟଙ୍କ ଠେଙ୍ଗାଟିରେ ସାପଟିକୁ ମାରିଦେଲେ ।

ଏ ଘଟଣାରେ ଆଚାର୍ଯ୍ୟ ମହାଶୟ କାହାରିକୁ କିଛି କହିଲେ ନାହିଁ । ମାତ୍ର ତା' ପରଠାରୁ ସେ ସାପମରା ବାଡ଼ିଟିକୁ ଆଉ ବ୍ୟବହାର କଲେ ନାହିଁ । ବିଶ୍ୱନାଥ ପଟ୍ଟନାୟକ ତାଙ୍କ ପାଇଁ ଆଉ ଗୋଟାଏ ନୂଆ ଠେଙ୍ଗା ଆଣି ଦେଲେ ।

ଏଇସବୁ ଅଞ୍ଚଳରୁ ଲୋକଙ୍କର ଦୁରବସ୍ଥାକୁ କେମିତି ସୁଧାରିବାକୁ ହେବ- ସେ ବିଷୟରେ ପଦଯାତ୍ରାରେ ଯୋଗ ଦେଇଥିବା କର୍ମୀମାନଙ୍କ ଭିତରେ ଖୁବ୍ ଆଲୋଚନା ହୁଏ ।

## (୫୦)

ଆଚାର୍ଯ୍ୟ ମହାଶୟ ସାଧାରଣତଃ ଗ୍ରାମୋଦ୍ୟୋଗ ଚପଲ ମାଡ଼ିଥାଆନ୍ତି । ଗ୍ରାମୋଦ୍ୟୋଗ ଚପଲ ୱାର୍ଦ୍ଧାଠାରେ ଖଦୀକେନ୍ଦ୍ରରେ ପ୍ରସ୍ତୁତ ହୁଏ । ଚପଲପାଇଁ ଚମଡ଼ା କୌଣସି କଂସେଇଖାନାରୁ ଆସେନା । ପ୍ରାକୃତିକ ଭାବରେ ମରିଥିବା ଗୋରୁଙ୍କ ଚମଡ଼ାରେ ଏ ଚପଲ ପ୍ରସ୍ତୁତ ହୋଇଥାଏ ।

ପଦଯାତ୍ରାରେ ଦେଖାଗଲା ଯେ ଆଚାର୍ଯ୍ୟ ମହାଶୟ ଚପଲ ପିନ୍ଧିକରି ଚାଲିଲାବେଳକୁ ଅନେକ ଜାଗାରେ ଝୁଣ୍ଟିପଡୁଛନ୍ତି । ବେଳେବେଳେ ଚପଲ ସହିତ ଘସି ହୋଇ ତାଙ୍କର ପାଦ ଉପରୁ ରକ୍ତ ବହୁଛି । ସେ ତ ପଦଯାତ୍ରାରୁ ଓହରି ଯିବାକୁ ପ୍ରସ୍ତୁତ ନୁହନ୍ତି । ଏଣୁ ଚପଲ ପିନ୍ଧିବା ବଦଳରେ ହଳେ କପଡ଼ା ଯୋତା ତାଙ୍କ ପାଇଁ ଅଣାଗଲା । କଳ ତିଆରି ଯୋତା ପିନ୍ଧିବାକୁ ସେ ମନା କରୁଥିଲେ । ମାତ୍ର ରମାଦେବୀ ଓ ଗୁଣନିଧି ମହାନ୍ତିଙ୍କ କୁହାବୋଲା ଫଳରେ ସେ ଏଥିପାଇଁ ରାଜିହେଲେ । ଆଣ୍ଠୁ ଉପରକୁ ଧଳାଧୋତିଟିଏ ସାଙ୍ଗକୁ ଯୋତାଟିଏ ପିନ୍ଧି ବାହାରିଲା ବେଳକୁ ପଦଯାତ୍ରୀ ଦଳରୁ କେହି କେହି କହିପକାନ୍ତି ''ଆଚାର୍ଯ୍ୟ ମହାଶୟ ଏଥର ଟେନିସ ଖେଳିବାକୁ ବାହାରିଲେ ।''

ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବାବେଳେ ଅନେକ ସମୟରେ ଛୋଟ ଛୋଟ ନାଳ ପଡ଼େ । ଏ ନାଳରେ ଯୋତା ଓହ୍ଲାଇ ପୁଣି ସେ କୂଳରେ ଯୋତା ମାଡ଼ିବାକୁ ଓଦା ଗୋଡ଼ଯୋଗୁଁ ଅସୁବିଧା ହୁଏ । ''ଆଚାର୍ଯ୍ୟ ମହାଶୟଙ୍କୁ ହଇରାଣରେ ପକେଇବା ବଦଳରେ ତାଙ୍କୁ କାନ୍ଧ କରିନେଲେ ତ କଥା ସରନ୍ତା''- ପଦଯାତ୍ରୀ ଦଳରୁ ଜଣେ କେହି ପ୍ରସ୍ତାବ ଦେଲେ । ତାହାହିଁ ହେଉ । ଆଚାର୍ଯ୍ୟ ମହାଶୟ ପଦଯାତ୍ରୀ ଦଳର ଜଣେ ଭେଣ୍ଡିଆ ଯୁବକର ପିଠିରେ କାନ୍ଧ ହୋଇ ନାଳ ପାରି ହେବାର ଅଭ୍ୟାସ କଲେ ।

କୋରାପୁଟ ଅଞ୍ଚଳରେ ପଦଯାତ୍ରା କରୁଥିବା ବେଳେ ଦିନେ ଦେଖାଗଲା ଯେ ଆଚାର୍ଯ୍ୟ ମହାଶୟ ଚିତ୍ କାତ୍ ହୋଇ ତଳେ ପଡ଼ିଛନ୍ତି । ସକାଳର ନିତ୍ୟକର୍ମ ସାରି ସେ ଶୀର୍ଷାସନ କରିବାକୁ ଯାଇ ଗଡ଼ି ପଡ଼ିଥାନ୍ତି ।

''ଆପଣ ଶୀର୍ଷାସନ କାହିଁକି କରୁଥିଲେ ?''- ଜଣେ କର୍ମୀ ପଚାରିଲେ ।

''ମୋତେ ପରା ସେ ଅମୁକ ଲୋକ କହିଲେ ଯେ ଶୀର୍ଷାସନ କଲେ ତା'ର ଭଲ ପ୍ରଭାବ ଆଖି ଉପରେ ପଡ଼େ ।''

କଥାଟି ରମାଦେବୀଙ୍କ କାନରେ ପଡ଼ିଲା ଓ ସେ ଆଉ କ'ଣ କରନ୍ତେ ? ପୁଅକୁ ମା' ଆକଟ କଲାପରି ସେ ଆଚାର୍ଯ୍ୟ ମହାଶୟଙ୍କୁ କହିଲେ, ''ଆଚାର୍ଯ୍ୟ ମହାଶୟ, ଆପଣ ଆଉ ଶୀର୍ଷାସନ

କରି ଗୋଡ଼ ହାତ ଭାଙ୍ଗନ୍ତୁ ନାହିଁ ।''

ଗୋଡ଼ହାତ ଭାଙ୍ଗିବାର ଦୃଷ୍ଟାନ୍ତ ଯେ ଆଚାର୍ଯ୍ୟ ମହାଶୟଙ୍କର ନଥିଲା ତା' ନୁହେଁ । ସେ ଥରେ ବରୀରୁ ଯାଜପୁରକୁ ଯାଉଥିଲେ ସାଇକେଲରେ । ଖରସୁଆ ଆରପଟେ ତାଙ୍କ ସାଇକେଲଟି ବନ୍ଧ ଉପରୁ ଗଡ଼ି ପଡ଼ିଲା ତ ଗୋଡ଼ହାତ ଛିଣ୍ଡେଇ ଆସି ସେ ପହଞ୍ଚିଲେ ଗୁହାଳି ଗାଁର ନୀଳମଣି ଧଳଙ୍କ ଘରେ । ତାଙ୍କ ସ୍ତ୍ରୀ ରେବା ରାୟ ଆଚାର୍ଯ୍ୟ ମହାଶୟଙ୍କ ଗୋଡ଼ ହାତରେ ପଟି ବାନ୍ଧି ସେବା ଶୁଶ୍ରୂଷା କରି ବରୀ ଆଶ୍ରମକୁ ରମାଦେବୀଙ୍କ ପାଖକୁ ଖବର ଦେଲେ ।

ସେହିଦିନଠାରୁ ଆଚାର୍ଯ୍ୟ ମହାଶୟଙ୍କ ସାଇକେଲ ଚଢ଼ିବା ବନ୍ଦ ହେଲା ।

କୋରାପୁଟ ଜିଲ୍ଲାରେ ଶେଷଥର ଲାଗି ପଦଯାତ୍ରା କରୁଥିବାବେଳେ ଆଚାର୍ଯ୍ୟ ମହାଶୟଙ୍କୁ ଜ୍ୱର ହେଲା । ଦେହରେ ତାତି ରହିଲା । ଖବର ପାଇ ରମାଦେବୀ ଓ ମାଳତୀ ଦେବୀ ପ୍ରମୁଖ କୋରାପୁଟ ଆସିଲେ । ସେତେବେଳକୁ ସଚିଦାନନ୍ଦ ମହାନ୍ତି ଆସି ପଦଯାତ୍ରାରେ ଯୁଟି ଥାଆନ୍ତି । ଗୁଣନିଧି ମହାନ୍ତି, ଈଶ୍ୱର ଲାଲ ବ୍ୟାସ ପ୍ରମୁଖ ସମସ୍ତଙ୍କ ମନରେ ଉଦ୍‌ବେଗ ମାତ୍ର ପଣ୍ଡିତ କୃପାସିନ୍ଧୁ ହୋତା ତାଙ୍କ ସହିତ ଚାଲୁଥିଲେ ହେଁ ଆଚାର୍ଯ୍ୟ ମହାଶୟଙ୍କ ଭଗ୍ନ ସ୍ୱାସ୍ଥ୍ୟକୁ ଏକଦମ୍ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ । ଆଚାର୍ଯ୍ୟ ମହାଶୟ ଥିଲେ ତାଙ୍କଠାରୁ ବୟସରେ ପାଞ୍ଚ ବର୍ଷ ବଡ଼ । ''ଗଛରୁ ପତ୍ର ଝଡ଼ିଲା ପରି ସମସ୍ତେ ତ ଯିବେ । ଏଥିପାଇଁ ଉଦ୍‌ବେଗର ଦରକାର କ'ଣ ?''

ଜଣେ ବିଶିଷ୍ଟ ବ୍ୟକ୍ତିଙ୍କର ମାଆ ୯୦ ବର୍ଷରେ ଦେହ ତ୍ୟାଗ କରିଥିବାର ''ଦୁଃସମ୍ବାଦ'' ଖବର କାଗଜରୁ ପଢ଼ି ହୋତା ମହାଶୟ କହିଉଠିଲେ- ''ନବେ ବର୍ଷର ବୁଢ଼ୀଲୋକ ଉଠାବସା କରିପାରୁ ନ ଥିବେ । ପୁଅ, ନାତିଙ୍କ ଆଗରେ ଚାଲିଯିବା ପାଇଁ ଉତ୍ସାହ କେଉଁଦିନରୁ । ଏଣୁ ସେ ଚାଲିଗଲେ ତ ଏଥିରେ ଦୁଃସମ୍ବାଦ କ'ଣ ?'' ସେ ମନକୁ ମନ କହି ଉଠନ୍ତି- ''ମୁଁ ତ ଆଚାର୍ଯ୍ୟ ମହାଶୟଙ୍କୁ କହି ଦେଇଛି ''ଗଛରୁ ପତ୍ର ପଡ଼ିଗଲା । ଆଚାର୍ଯ୍ୟେ ଚାଲିଗଲେ । ସୁସମ୍ବାଦ ।''

ଦେହ ଟିକିଏ ଭଲ ହେଲାପରେ ସମସ୍ତଙ୍କ ମନା ସତ୍ତ୍ୱେ ଆଚାର୍ଯ୍ୟ ମହାଶୟ ପୁଣି ପଦଯାତ୍ରାରେ ଚାଲିଲେ । କାହାରି ମନା ମାନିଲେ ନାହିଁ । ଉତ୍କଳ ସର୍ବୋଦୟ ମଣ୍ଡଳ ତରଫରୁ ଆଚାର୍ଯ୍ୟ ମହାଶୟଙ୍କ ହାତରେ ପଚିଶ ହଜାର ଟଙ୍କାର ଏକ ଥଳି କଟକ ସହରରେ ଦିଆଯିବା କଥା ହେଲା । ସେଥିପାଇଁ ସେ ଯେଉଁଠାରେ ଥାଆନ୍ତୁନା କାହିଁକି ସେଠାରେ ପଦଯାତ୍ରା ସ୍ଥଗିତ ରଖି କଟକ ଆସିବାକୁ ରାଜି ହେଲେ । ତା'ପରେ ବିଶ୍ରାମ ନେବା କଥା । କୋରାପୁଟ ଜିଲ୍ଲାରେ ପଦଯାତ୍ରା ଶେଷ କରି ଆଚାର୍ଯ୍ୟ ମହାଶୟ କଟକ ଆସିଲେ । ଥୋରିଆ ସାହିର ଗୁଣନିଧି ଭବନର ପିଣ୍ଡାରେ ଏଥର ତାଙ୍କର ବିଛଣା ପଡ଼ିଲା ।

ପୁରୀର ହେରାଗୋହିରୀ ସାହିଠାରେ 'ଗୀତା ଭବନ'ଟି ଅନେକ ଦିନରୁ ବ୍ୟବହୃତ ନ ହୋଇ ପଡ଼ିଥିଲା । ପୁରୀର ଜଗନ୍ନାଥ ମିଶ୍ର ପ୍ରମୁଖ ଚାହିଁଲେ ଯେ ଆଚାର୍ଯ୍ୟ ମହାଶୟ ଓ ହୋତା ମହାଶୟ ସେହିଠାରେ ଆସି ରହନ୍ତି ।

ଥୋରିଆ ସାହିର କାଉଳି ଅପେକ୍ଷା ଗୀତା ଭବନଟି ଅପେକ୍ଷାକୃତ ନିରୋଳା ହେବ ବୋଲି

ସମସ୍ତେ ଅନୁଭବ କରିବାରୁ ଆଚାର୍ଯ୍ୟ ମହାଶୟ କଟକ ଛାଡ଼ି ପୁରୀକୁ ଚାଲିଲେ । ତାଙ୍କ ସହିତ ସଚ୍ଚିଦାନନ୍ଦ ମହାନ୍ତି ଗଲେ ତାଙ୍କର ସେବା କରିବାପାଇଁ ।

ହେରାଗୋହିରୀ ସାହିର ଗୀତା ଭବନଟିର ନୂଆ ନାମ କରଣ ହେଲା ଗୋପବନ୍ଧୁ ଭବନ । ହୋତା ମହାଶୟ ଓ ସୁନାମଣି ଦେବୀ ମଧ୍ୟ ଆସି ଗୋପବନ୍ଧୁ ଭବନରେ ଆଶ୍ରୟ ନେଲେ । ଆଚାର୍ଯ୍ୟ ମହାଶୟଙ୍କର ଦୃଷ୍ଟି ଶକ୍ତି ନଥିବା ସାଙ୍ଗକୁ ହୋତା ମହାଶୟଙ୍କର ହାତ ଖୁବ୍ ଥରେ । ଓଦା ଗାମୁଛା ଖଣ୍ଡକ ବି ସେ ଚିପୁଡ଼ି ପାରନ୍ତି ନାହିଁ । ପଣ୍ଡିତ କୃପାସିନ୍ଧୁ ହୋତା ତାଙ୍କର ଦେଢ଼ଶୁର ହେଲେ ବି ସୁନାମଣି ଦେବୀ ତାଙ୍କୁ ବାପା ଭଳି ମାନନ୍ତି । ଦୁଇ ବୁଢ଼ାଙ୍କ ପାଇଁ ରୋଷେଇ କରିବା ଓ ସେମାନଙ୍କର ସ୍ୱାସ୍ଥ୍ୟକୁ ଜଗିବା ଦାୟିତ୍ୱ ପଡ଼ିଲା ସୁନାମଣି ଦେବୀଙ୍କ ଉପରେ ।

ଏଣିକି ଗୋପବନ୍ଧୁ ଭବନ ହେଲା ଆଚାର୍ଯ୍ୟ ହରିହର ଦାସଙ୍କର ପୀଠସ୍ଥଳୀ । ବିଭିନ୍ନ ଆଡ଼ରୁ ଯେତେ ନେତା ଓ କର୍ମୀ- ଏ ସମସ୍ତେ ଯାଆନ୍ତି ତାଙ୍କୁ ସେହିଠାରେ ଦେଖା କରିବାପାଇଁ ।

ସଚ୍ଚିବାବୁଙ୍କ କାନ୍ଧରେ ଭରା ଦେଇ ଆଚାର୍ଯ୍ୟ ମହାଶୟ ସକାଳୁ ଗୋଟାଏ ଘେରା ମାରି ଆସନ୍ତି ସମୁଦ୍ର ଆଡ଼େ କିମ୍ବା କୌଣସି ଚିହ୍ନା ପରିଚିତ ଲୋକଙ୍କ ଘର ଆଡ଼େ । ଖରା ବେଶି ହେବା ଆଗରୁ ଗୋପବନ୍ଧୁ ଭବନକୁ ଫେରିଆସି ସେଦିନର ଖବର କାଗଜଟି ଶୁଣନ୍ତି । ସକାଳ ପରି ସନ୍ଧ୍ୟାବେଳେ ମଧ୍ୟ ତାଙ୍କର ବୁଲାହୁଏ । ରାସ୍ତାରେ ସେତେବେଳକୁ ଗହଳି ବଢ଼ିଥାଏ । ଏଣୁ ସନ୍ଧ୍ୟା ସମୟର ବୁଲିବାଟା ଅନେକ ସମୟରେ ରିକ୍ସାରେ ହିଁ ହୋଇଥାଏ ।

ଆଚାର୍ଯ୍ୟ ମହାଶୟ ଓ ହୋତା ମହାଶୟଙ୍କ ଖର୍ଚ୍ଚ ପାଇଁ ସମାଜ ଅଫିସରୁ ନିୟମିତ ଭାବରେ କିଛି ପଇସା ପଠାଇବାର ବ୍ୟବସ୍ଥା ରାଧାନାଥ ରଥ କରିଥାଆନ୍ତି । ତା'ଛଡ଼ା ପଣ୍ଡିତ ନୀଳକଣ୍ଠ ଦାସଙ୍କ ପାଣ୍ଠିରୁ ମଧ୍ୟ ଉଭୟଙ୍କ ପାଇଁ ପଇସା ଆସେ । ମାତ୍ର ଏସବୁ ପଇସା ସେମାନଙ୍କ ନାଆଁରେ ଆସୁଥିଲେ ବି ଦୁଇ ବୁଢ଼ା ଏଥିରୁ ଧାର ଧାରନ୍ତି ନାହିଁ । ସର୍ବୋଦୟ ମଣ୍ଡଳ ତରଫରୁ ଅନ୍ୟ କର୍ମୀମାନଙ୍କୁ ଏହି ପାଣ୍ଠିରୁ ସାହାଯ୍ୟ ମିଳେ । ଆଚାର୍ଯ୍ୟ ମହାଶୟଙ୍କର ସମସ୍ତ ସମ୍ପତ୍ତି ହେଲା ଖଣ୍ଡେ ମସାରି ତା ସାଙ୍ଗକୁ ଦୁଇଖଣ୍ଡ ହାତବୁଣା ଖଦଡ଼ ଧୋତି ଓ ଖଦଡ଼ ଚାଦର । ଧୋତି କିମ୍ବା ଚାଦରରେ ଧଡ଼ି ନଥାଏ । ଗୋଟାଏ ଡାଏରୀ । ଏଠୁସେଠୁ ଆସିଥିବା କେତେକ ଚିଠି । କନାଥଳୀରେ ବନ୍ଧା ହୋଇଥିବା ତମ୍ବା ପାତ୍ର ଏବଂ ଗୋଟିଏ ରୁଦ୍ରାକ୍ଷ ମାଳା । ଦୁଇଖଣ୍ଡ ଧୋତିରୁ ଖଣ୍ଡେ ପିନ୍ଧନ୍ତି ଓ ଆରଟି ଖରାରେ ଶୁଖୁଥାଏ । ଏ ସମସ୍ତ ସମ୍ପତ୍ତି ତାଙ୍କ ବିଛଣା ଭିତରେ ବନ୍ଧା ହୋଇଥାଏ । ସେସବୁ ଭିତରୁ କୌଣସିଟି ହାତରେ ନ ପଡ଼ିଲେ ପାଖରେ ଥିବା ପିଲାମାନଙ୍କୁ ଲକ୍ଷ୍ୟକରି ସେ କହି ଉଠନ୍ତି ''ଆରେ ମୋର ଯାହାଟା କୁଆଡ଼େ ଗଲା ?'' ଗାମୁଛା, ଧୋତି, ବାଡ଼ି - ଏସବୁର ସର୍ବନାମ ତାଙ୍କ ପାଖରେ ଥାଏ ''ଯାହା'' । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ମଧ୍ୟ ଏହି ଯାହା ଶବ୍ଦଟି ବ୍ୟବହାର କରୁଥିଲେ ସବୁକଥାପାଇଁ । ଆଚାର୍ଯ୍ୟ ମହାଶୟଙ୍କର ସବୁ ସମ୍ପତ୍ତି ତାଙ୍କ ବିଛଣା ଖଣ୍ଡକ ଭିତରେ ଆବଦ୍ଧ ରହିଥିବାରୁ ମନମୋହନ ଚୌଧୁରୀ ତା ନାଁ ଦେଇଥାଆନ୍ତି ''ଆଚାର୍ଯ୍ୟ ମହାଶୟଙ୍କ ଯଥା ସର୍ବସ୍ୱ ।''

ଥରେ ବିଶ୍ୱନାଥ ଦାସ ଆସି ଗୋପବନ୍ଧୁ ଭବନରେ ପହଞ୍ଚିଲେ । ସେତେବେଳକୁ ସେ ଉତ୍ତର ପ୍ରଦେଶର ଗଭର୍ଣ୍ଣର ଥାଆନ୍ତି । ହୋତା ମହାଶୟ ଓ ଆଚାର୍ଯ୍ୟ ମହାଶୟଙ୍କ ଲାଗି କେଉଁ ପୁରୁଣା ବିଧି ରକ୍ଷାପାଇଁ କେଜାଣି ସାଙ୍ଗରେ ଆଣିଥାଆନ୍ତି ଦୁଇଟି ମଠା ଯୋଡ଼ । ଆଚାର୍ଯ୍ୟ ମହାଶୟଙ୍କୁ ତ ଦିଶୁ ନଥିଲା । ଏଣୁ ବିଶ୍ୱନାଥବାବୁ ଯାହା କିଛି ଆଣି ତାଙ୍କ ହାତରେ ଦେଲେ ବି ସେ ତାହା ହଠାତ୍ ଜାଣି ପାରୁନଥିଲେ । ତା'ଛଡ଼ା ବିଶ୍ୱନାଥ ଦାସ ଶ୍ରଦ୍ଧାରେ ଦେଉଥିବା ଜିନିଷଟିକୁ ଗ୍ରହଣ ନକଲେ ତାଙ୍କ ମନରେ କଷ୍ଟ ହୋଇପାରେ । ସେତ ମାଛିକୁ ମ' କହିବା ଲୋକ ନୁହନ୍ତି । ଏଣୁ ମଠାଯୋଡ଼ଟି ହାତରେ ଧରିଲେ ।

ବିଶ୍ୱନାଥବାବୁ ଅନ୍ୟ ଯୋଡ଼ଟିକୁ ହୋତା ମହାଶୟଙ୍କୁ ଦେବାବେଳକୁ ହୋତା ମହାଶୟ କହି ଉଠିଲେ, ''ବିଶ୍ୱନାଥବାବୁ, ଆପଣତ ଜଣେ ଜ୍ଞାନୀ ଲୋକ । ଆପଣଙ୍କର ଏ ପାଟ ଯୋଡ଼କୁ ପିନ୍ଧି ଆଚାର୍ଯ୍ୟ ମହାଶୟ କି ମୁଁ ଗାଁ ଭିତରକୁ ଗଲେ ଗାଁର ମଳିମୁଣ୍ଡିଆ ଲୋକେ ଆମକୁ କ'ଣ କହିବେ ? ଆମର ଏ ଲୁଗା କ'ଣ ହେବ ?'' ବିଶ୍ୱନାଥ ଦାସ ହସିଲେ । ଲୁଗା ଦୁଇଯୋଡ଼କୁ ସଚ୍ଚିବାବୁ ପରେ ଅବଶ୍ୟ ବାଣ୍ଟି ଦେଲେ ।

ଏତିକି ବେଳକୁ ଓଡ଼ିଶାରେ ଛାତ୍ରମାନଙ୍କର ଆନ୍ଦୋଳନ ହେଲା । ଓଡ଼ିଶାରେ ତତ୍କାଳୀନ ବିଜୁ-ବୀରେନ୍ ସରକାରକୁ ତଡ଼ି ବିରୋଧୀ ଦଳମାନେ ସରକାର ଗଢ଼ିବା ପାଇଁ ଉଦ୍ୟମ କରୁଥାଆନ୍ତି । ଏଣୁ ଛାତ୍ର ଆନ୍ଦୋଳନ ପଛରେ ସେମାନଙ୍କ ହାତ ଥାଏ । ବାହାରକୁ ଦେଖା ଯାଉଥାଏ ଯେ ଛାତ୍ରମାନେ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ କଲେଜ ବର୍ଜନ କରିଛନ୍ତି ଅନ୍ୟାୟ ବିରୋଧରେ, ଦରମା ବଢ଼ିବା ବିରୋଧରେ ଇତ୍ୟାଦି । ସରକାର ସେମାନଙ୍କ ନାଆଁରେ ଓ୍ୟାରେଣ୍ଟ ପଠେଇଲାବେଳକୁ ଛାତ୍ରନେତାମାନେ ଆଶ୍ରୟ ନେଇଥାନ୍ତି ମୁଖିଆ ମୁଖିଆ ରାଜନୈତିକ ନେତାଙ୍କ ଓଳିରେ । ସରକାରଙ୍କ ତରଫରୁ ସଭାସମିତି କରାଯିବାକୁ ମନାଥାଏ । ପ୍ରଦେଶସାରା ଏକ ଅଶାନ୍ତ ପରିସ୍ଥିତି ଉପୁଜିଥାଏ ଓ କଟକରେ ଗୁଳିକାଣ୍ଡ ଘଟିଥାଏ । ଏ ପରିସ୍ଥିତିରେ ଆଚାର୍ଯ୍ୟ ମହାଶୟ ଆଉ ପୁରୀରେ ବସି ରହନ୍ତେ କ'ଣ କଟକ ଆସିଲେ ।

''ଛାତ୍ର ଓ ସରକାରଙ୍କ ଭିତରେ ଆଚାର୍ଯ୍ୟ ମହାଶୟ ମଧ୍ୟସ୍ଥତା କରନ୍ତୁ'', ''ଛାତ୍ରମାନଙ୍କ ପ୍ରତି ସହାନୁଭୂତି ଦେଖାଇ ସେ ଅନଶନ କରନ୍ତୁ'' -- ଏମିତି କେତେ ରକମର ପ୍ରସ୍ତାବ ତାଙ୍କ ପାଖକୁ ଆସିଲା । ଆଚାର୍ଯ୍ୟ ମହାଶୟଙ୍କ ଅନଶନ କରିବା କଥାଟାକୁ ରମାଦେବୀ ଏକାବେଳେକେ କାଟି ଦେଲେ । ତାଙ୍କୁ ଆଗରେ ରଖି ରମାଦେବୀ ଛାତ୍ରମାନଙ୍କୁ ଡାକିଲେ । ସହଯୋଗୀ ଫକୀର ମିଶ୍ର ଓ ଝିଅ ଅନ୍ନପୂର୍ଣ୍ଣା ମହାରଣାଙ୍କ ସହାୟତାରେ ସରକାର ଓ ଛାତ୍ରଙ୍କ ମଧ୍ୟରେ ବୁଝାମଣା କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ।

ଆଚାର୍ଯ୍ୟ ମହାଶଙ୍କର କଟକ ଆସିବାର ଆଉ ଏକ କାରଣ ହେଲା ଯେ ତାଙ୍କର ପ୍ରିୟ କଣ୍ଠ-ପଣ୍ଡିତ ନୀଳକଣ୍ଠ ଦାସ- ସେତେବେଳକୁ ଭାରି ରୁଗ୍ଣ ଅବସ୍ଥାରେ । ଥୋରିଆ ସାହିରୁ ମଝିରେ ମଝିରେ ସେ ତାଙ୍କୁ ଦେଖା କରି ଆସନ୍ତି । ଦୃଷ୍ଟିଶକ୍ତି ତ ନଥାଏ । ଖାଲି ମୁଣ୍ଡକି ଦେହଟିକୁ ଆଉଁଷି

ଦେବା କଥା । ହରିଭାଇନାଙ୍କ ହାତ ଛୁଆଁ ରୋଗୀ ନୀଳକଣ୍ଠଙ୍କୁ ଆଶ୍ୱସ୍ତ କରେ । ୧୯୬୭ ମସିହା ନଭେମ୍ବର ୬ ତାରିଖରେ ପଣ୍ଡିତ ନୀଳକଣ୍ଠ ଦାସ ସେ ପୁରକୁ ଗଲେ ।

ଇତିମଧ୍ୟରେ ବୁଢ଼ାବୁଢ଼ୀମାନଙ୍କ ଭିତରୁ ଗୁଣନିଧି ମହାନ୍ତି ଓ ଈଶ୍ୱରଲାଲ ବ୍ୟାସଙ୍କର ପରଲୋକ ହେଲା । ରହିଲେ ଏକମାତ୍ର ହୋତା ମହାଶୟ । ତେଣେ ସେମାନଙ୍କର ପରିଚର୍ଯ୍ୟା କାର୍ଯ୍ୟ କରି ଆସୁଥିବା ସୁନାମଣି ଦେବୀ ନିଜେ ବେମାର ପଡ଼ିବାରୁ ରମାଦେବୀ ଉଭୟଙ୍କୁ ଅନୁରୋଧ କଲେ ଏଣିକି କଟକରେ ରହିବା ପାଇଁ । ଅନ୍ୟମାନଙ୍କ କଥାକୁ ସିନା ଏଡ଼େଇ ହେବ । ହେଲେ ରମାଦେବୀଙ୍କ କଥାରୁ ସେମାନେ ଓହରି ଯାଆନ୍ତେ କେମିତି ? ଭୂଦାନ ଅଫିସର ବାରଣ୍ଡା ଉପରେ ଦୁଇଖଣ୍ଡ ସପ ପଡ଼ିଥାଏ । ତା'ରି ଉପରେ ସେମାନଙ୍କର ଅବସ୍ଥାନ । ବାରଣ୍ଡା ପଛପଟେ ଟିଣ ଛାତ ଦିଆ ଛୋଟିଆ କୋଠରିଟି ଭିତରେ ପଡ଼ିଥିବା ଦୁଇଖଣ୍ଡ ଖଟ ଉପରେ ସେମାନଙ୍କର ଶୁଆ ବସା ହୁଏ ।

ଆଚାର୍ଯ୍ୟ ମହାଶୟଙ୍କୁ ଦେଖା କରିବାପାଇଁ ତାଙ୍କର ପୁରୁଣା ଛାତ୍ରମାନେ ତ ଆସି ପହଞ୍ଚନ୍ତି । ରାଧାନାଥ ରଥ, ବିଶ୍ୱନାଥ ଦାସ, କାଳନ୍ଦୀ ଚରଣ ପାଣିଗ୍ରାହୀ, କାଳୀ ଚରଣ ପଟ୍ଟନାୟକ- ଏମିତି କେତେ ଲୋକ ଆସନ୍ତି ତାଙ୍କୁ ଦେଖା କରିବାପାଇଁ । ବିଶ୍ୱନାଥବାବୁଙ୍କ ସାଙ୍ଗରେ ବାଣୀକଣ୍ଠ ନିମାଇଁ ହରିଚନ୍ଦନ କେତେବେଳେ ଆସି ଗୀତ ଗାଆନ୍ତି । ହାରମୋନିୟମ୍ କି ମୃଦଙ୍ଗ କିଛି ନଥାଏ । ତଥାପି ତାଙ୍କ ସ୍ୱରର ମଧୁରତା କହିଲେ ନସରେ ।

ଆଚାର୍ଯ୍ୟ ମହାଶୟଙ୍କ ସ୍ୱାସ୍ଥ୍ୟ ଆଉ ଭଲ ରହୁନଥାଏ । ପାଦ ଦୁଇଟି ଟିକିଏ ଫୁଲି ଯାଇଥାଏ । ମଝିରେ ମଝିରେ ପେଟଟା ବି ଫମ୍ପେଇଲା ପରି ଦିଶୁଥାଏ । ଜ୍ୱର ହେଉଥାଏ । ଏସବୁ ଭିତରେ ବି ତାଙ୍କର ରାତି ୪ଟାରେ ଉଠିବା, ରାତି ନ ପାହୁଣୁ ଗାଧୋଇବା ଇତ୍ୟାଦି ବନ୍ଦ ହୋଇ ନଥାଏ ।

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି ।
ଦେବତା ହେଲେ ହେଁ ମରଇ ।।

ଆଚାର୍ଯ୍ୟ ହରିହର ଦାସଙ୍କ ଦେହାବସାନ ଘଟିଲା ୧୯୭୧ ମସିହା ଫେବୃଆରୀ ୨୧ ତାରିଖ ଦିନ- ପଙ୍କଉଦ୍ଧାର ଏକାଦଶୀରେ । ମାଘ ମାସର ଶୀତ ସାଙ୍ଗକୁ କଟକରେ ସେତେବେଳକୁ ନିର୍ବାଚନର ଘନଘଟା ବିଭିନ୍ନ ରାଜନୈତିକ ଗୋଷ୍ଠୀ ଆଚାର୍ଯ୍ୟ ମହାଶୟଙ୍କ ଶବଯାତ୍ରାରେ ଯୋଗ ଦେଲେ । କଟକରୁ ଏକ ମଟର ଗାଡ଼ିରେ ତାଙ୍କର ମୃତ ଦେହକୁ ନିଆଗଲା ସତ୍ୟବାଦୀକୁ । ବକୁଳବନରେ ତାଙ୍କର ସମାଧି ହେଲା । ଥୋରିଆ ସାହିର ଭୂଦାନ ଅଫିସ ସାମନାରେ ଗହଳିର ସୀମା ନ ଥାଏ — ମହାରଥୀଙ୍କର ଶେଷ ଦର୍ଶନ ପାଇଁ । ଆଚାର୍ଯ୍ୟ ମହାଶୟଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଓଡ଼ିଶାର ଚାରିଆଡ଼େ ସଭାସମିତି କରାଗଲା । ବହୁ ନୂଆ-ପୁରୁଣା କର୍ମୀ ତାଙ୍କ ସାନ୍ନିଧ୍ୟର କିମିଆ ସ୍ପର୍ଶ ବିଷୟରେ ଅନେକ କହିଲେ ଓ ଲେଖିଲେ ।

ପ୍ରେସ୍ ଟ୍ରଷ୍ଟ ଅଫ ଇଣ୍ଡିଆର ଜଣେ ସାମ୍ବାଦିକ ନବକୃଷ୍ଣ ଚୌଧୁରୀଙ୍କୁ ପଚାରିଲେ ଆଚାର୍ଯ୍ୟ

ମହାଶୟଙ୍କ ବିୟୋଗ ବିଷୟରେ ମତାମତ ଦେବାପାଇଁ । ସାମ୍ବାଦିକ ଲୋକ ତ । କିଛି ନା କିଛି ଲେଖିବାକୁ ହେବ ! ନବବାବୁ ସାମ୍ବାଦିକ ଜଣଙ୍କୁ ଉତ୍ତର ଦେଲେ-

''ସେ ଥିଲେ ଆମମାନଙ୍କର ବାପା ଭଳି । ବାପା ଚାଲିଗଲେ । ଏଥିରେ ଆଉ ମତାମତ ଦେବାର କ'ଣ ଅଛି ?'' ଆଚାର୍ଯ୍ୟ ହରିହର ଦାସଙ୍କର ନିଜର ପୁଅ, ଝିଅ ନ ଥିଲେ, ମାତ୍ର ସେ ଥିଲେ ସମସ୍ତଙ୍କ ପାଇଁ ପିତୃ ତୁଲ୍ୟ !

## ଉପସଂହାର

ପୂରା ବର୍ଷେ ପଡ଼ିଗଲା ପରେ ଆହୁରି କେତେଦିନ ଗଲାଣି । ଆଚାର୍ଯ୍ୟ ମହାଶୟଙ୍କ କାମିକା ଜୀବନର ଇତିହାସ ଠିକେ ଠିକେ ଶୁଣୁ ଶୁଣୁ ଏତେଦିନ ଚାଲିଗଲା । ତାଙ୍କ କାମ ହୋଇନି । ଅପରେସନ୍‌ପରେ ମଧ୍ୟ ଆଖି ତାଙ୍କର ଦୃଷ୍ଟିଶକ୍ତି ପାଇନାହିଁ । ତଥାପି ଚାଲିଛନ୍ତି । କାହିଁକି ?-

ଏଇଠି ଗୋଟାଏ କଥା ମନେପଡ଼େ ।

ସମୁଦ୍ର କୂଳରେ ବାଲି ଉପରେ ଗୋଟିଏ ଚଢ଼େଇ ଆପଣାର ବସା ବାନ୍ଧି ରହିଥାଏ । ଦିନେ ସେ ଓ ତା'ର ସ୍ତ୍ରୀ ଉଭୟେ ବାହାରକୁ ଖାଦ୍ୟ ସଂଗ୍ରହ କରିବାକୁ ଯାଇଥାଆନ୍ତି । ବସାରେ,ବାଲି ଉପରେ ଥାଏ ସେମାନଙ୍କର ଅଣ୍ଡାଟି । ସମୁଦ୍ର କୂଳର ଚଢ଼େଇ ତ ! ସେମାନେ କ'ଣ ବଣି କିମ୍ବା ବାୟା ହୋଇଛନ୍ତି ଯେ, ଗଛ ଅଗରେ ବସା ବାନ୍ଧି ରହିବେ ? ସମୁଦ୍ର କୂଳର ବାଲିହିଁ ସେମାନଙ୍କର ଉଆସ ।

କିନ୍ତୁ ସମୁଦ୍ରର ଢେଉ ବେପରବାୟ ଭାବରେ ଅଣ୍ଡାଟିକୁ ଭସେଇ ନେଇଗଲା । ସେମାନେ ଫେରିଲେ, ଦେଖିଲେ ଅଣ୍ଡା ନାହିଁ । ପୁରୁଷ ଚଢ଼େଇଟି ସମୁଦ୍ରର ଏ କାରସାଦି ବିରୁଦ୍ଧରେ ମନେ ମନେ ବିଦ୍ରୋହୀ ହୋଇ ଉଠିଲା । ସମୁଦ୍ର ଶୁଖେଇ ଆପଣା ଅଣ୍ଡାର ଉଦ୍ଧାର ପାଇଁ ପ୍ରତିଜ୍ଞାକଲା । ପର ମୁହୂର୍ତ୍ତଠୁଁ ପଣ ଅନୁସାରେ କାମରେ ଲାଗିଲା । ତାର ମନ୍ତ୍ର କ'ଣ ଥିଲା ଜାଣନ୍ତି ?

ତାର ମନ୍ତ୍ର ଥିଲା -

'କାର୍ଯ୍ୟଂ ବା ସାଧୟେତ୍
ଶରୀରଂ ବା ପାତୟେତ୍'



ପଦଯାତ୍ରୀ ଆଚାର୍ଯ୍ୟ ହରିହର

ଜଣେ ଯାତ୍ରୀ
ସ୍ଥିତପ୍ରଜ୍ଞ ଋଷିପ୍ରତିମ ଆଚାର୍ଯ୍ୟ ହରିହରଙ୍କ
ଜୀବନ ଚରିତ,
ଏକ ମହାଯାତ୍ରା ।

"ଭଲ ମଣିଷ ହୁଅ, ଦେଶ କାମ କର"
ସେହି ମହାଯାତ୍ରୀଙ୍କର ମହାର୍ଘ୍ୟ ଉପଦେଶ
ଆଗାମୀକୁ କାଳ କାଳକୁ ।

"ସ୍ୱାଧୀନତା ଆସିଛି । ହେଲେ ଗାଁଏ ଗାଁଏ ତାହା
ପହଞ୍ଚି ନାହିଁ । ସୂର୍ଯ୍ୟ ଆସିଗଲେଣି । ମାତ୍ର କବାଟ
ବନ୍ଦ କରିଥିବାରୁ ଆମେ ତାଙ୍କୁ ପାଇନୁ ।।"

ଆଚାର୍ଯ୍ୟ ହରିହର ଦାସ